অতুল চন্দ্র গুপ্ত

# କାବ୍ୟ ଜିଜ୍ଞାସା

ଅନୁବାଦ

ଡକ୍ଟର ବସନ୍ତ କୁମାର ପଣ୍ଡା



# କାବ୍ୟଜିଜ୍ଞାସା

ଅତୁଲ ଚନ୍ଦ୍ର ଗୁପ୍ତ

ଅନୁବାଦକ

ଡକ୍ଟର ବସନ୍ତ କୁମାର ପଣ୍ଡା



**କାବ୍ୟଜିଜ୍ଞାସା**—ଲେଖକ : ଅତୁଲ୍ ଚନ୍ଦ୍ର ଗୁପ୍ତ, ଅନୁବାଦକ : ଡକ୍ଟର ବସନ୍ତ କୁମାର ପଣ୍ଡା, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଥମ ପ୍ରକାଶ : ୧୯୯୫, ପ୍ରଚ୍ଛଦପଟ ଅସିତ୍ ମୁଖାର୍ଜୀ, ମୁଦ୍ରଣ : ଲିପିକାର, ଝାଞ୍ଜିରିମଙ୍ଗଳା, କଟକ-୯



KAVYAJIJNASA—Author : Atul Chandra Gupta, Translated by : Dr. Basanta Kumar Panda, Publisher : Sahadev Pradhan, Friends' Publishers, Binodbehari, Cuttack-753002, Orissa (India), First Edition : 1995, Cover design : Asit Mukherjee, Printer : Lipikar, Jhanjirimangala, Cuttack-9

Price : Rs. 20.

Deluxe : Rs. 25.

# ଅନୁକ୍ରମ

# ଭୂମିକା

୧୯୩୩ ସାଲରେ ସବୁଜପତ୍ରରେ 'କାବ୍ୟଜିଜ୍ଞାସା' ଶୀର୍ଷକରେ ମୋର ଯେଉଁ କେତୋଟି ପ୍ରବନ୍ଧ ପ୍ରକାଶ ପାଇଥିଲା, ଉଲ୍ଲେଖଯୋଗ୍ୟ କୌଣସି ପରିବର୍ତ୍ତନ ବିନା ଏଇ ବହିଟି ସେଇ ପ୍ରବନ୍ଧଗୁଡ଼ିକ ସଂଗ୍ରହ ମାତ୍ର ।

ଏଇ ଗ୍ରନ୍ଥର ପ୍ରବନ୍ଧଗୁଡ଼ିକରେ ସଂସ୍କୃତ ଆଳଙ୍କାରିକମାନଙ୍କର ମତାମତ ଅବଲମ୍ବନକରି କାବ୍ୟ ସଂପର୍କରେ କେତୋଟି ମୂଳ ପ୍ରସଙ୍ଗର ଆଲୋଚନା କରିବାପାଇଁ ଚେଷ୍ଟା କରିଛି । ବହିଟି ଆଲୋଚ୍ୟ ବିଷୟଗୁଡ଼ିକ ସଂପର୍କରେ ଆଳଙ୍କାରିକମାନଙ୍କର ମତବାଦର ସମଷ୍ଟି କେବଳ ନୁହେଁ । କାରଣ, ପ୍ରାୟ ପ୍ରତି ବିଷୟରେ ବିଭିନ୍ନ ଆଳଙ୍କାରିକମାନଙ୍କର ଭିନ୍ନ ଭିନ୍ନ ମତ, କିନ୍ତୁ ଏଇ ଗ୍ରନ୍ଥରେ କେବଳ ସେଇ ସବୁ ମତ ଓ କଥା ଉଦ୍ଧାର ଓ ଆଲୋଚନା କରିଛି, ଯାହା ମୋର ନିଜର ମନଦେନା ହୋଇଛି । ବିରୁଦ୍ଧ ମତର ଉଲ୍ଲେଖ ଯେଉଁଠି ଅଛି, ସେସବୁ କେବଳ ଗ୍ରାହ୍ୟ ମତକୁ ପରିସ୍ଫୁଟ କରିବା ପାଇଁ ।

ହୁଏତ କହିବା ବାହୁଲ୍ୟ ଯେ, କାବ୍ୟ ସଂପର୍କରେ ଆଳଙ୍କାରିକମାନଙ୍କର ଯେତେ ଆଲୋଚ୍ୟ ବିଷୟ ଥିଲା, ସେ ସକଳ ଏଇ ଗ୍ରନ୍ଥର ଆଲୋଚ୍ୟ ବିଷୟ ନୁହେଁ । ଆମର ଏ ଯୁଗର ଲୋକଙ୍କ ମନରେ କାବ୍ୟ ସଂପର୍କରେ ଯେଉଁ ସବୁ ପ୍ରଧାନ ଜିଜ୍ଞାସା—ଏଇ ଗ୍ରନ୍ଥରେ କେବଳ ତାହା ଆଲୋଚନା କରିଛି । ଆଳଙ୍କାରିକମାନେ ଏପରି ବହୁ ବିଷୟ ଆଲୋଚନା କରିଛନ୍ତି, ଯେଉଁ ବିଷୟରେ ଆମର କୌଣସି କୌତୂହଳ ନାହିଁ। କାରଣ, କାଳଭେଦରେ କେବଳ ମୀମାଂସାର ଯେ ପରିବର୍ତ୍ତନ ହୁଏ ତା ନୁହେଁ, ପ୍ରଶ୍ନ ବି ବଦଳିଯାଏ । କିନ୍ତୁ କାବ୍ୟବସ୍ତୁ ଏକାପ୍ରକାର ବୋଲି ଯେଉଁସବୁ ଜିଜ୍ଞାସା ଆମ ମନରେ ଜନ୍ମେ, ସେଥିମଧ୍ୟରୁ ଅନେକ ବହୁ ଆଳଙ୍କାରିକମାନଙ୍କର ମନକୁ ବି ଆସିଥିବ । ଆଉ ସେମାନଙ୍କ ମଧ୍ୟରୁ କେହି କେହି ସେଗୁଡ଼ିକର ଯେଉଁ ପ୍ରକାର ବିଚାର ଓ ମୀମାଂସା କରିଛନ୍ତି, ତାହା

ବିଶ୍ଳେଷଣର ନିପୁଣତାରେ ଓ ଅନ୍ତର୍ଦୃଷ୍ଟିର ଗଭୀରତାରେ କାବ୍ୟତତ୍ତ୍ୱର ପ୍ରାଚୀନ ବା ନବୀନ କୌଣସି ଆଲୋଚନାଠାରୁ କମ୍ ଉପାଦେୟ ନୁହେଁ । ସଂସ୍କୃତ ଆଳଙ୍କାରିକମାନଙ୍କର ସେହି ବିଚାର ଓ ମୀମାଂସାର କିଛି ପରିଚୟ ଏହି ଗ୍ରନ୍ଥରେ ଦେବାକୁ ପ୍ରୟାସ କରିଛି । ସେଥିପାଇଁ ସେମାନଙ୍କର ନାନାଆଡ଼େ ଅବିନ୍ୟସ୍ତ ରହିଥିବା ମତ ଓ କଥାକୁ ଏକାଠି ସଂଜୋଇ ଗୁନ୍ଥିବାକୁ ପଡ଼ିଛି, ଗ୍ରନ୍ଥନର ସୂତାରେ ମୋର । ବେଳେ ବେଳେ ସେମାନଙ୍କର କଥା ଉପରୁ ପୁରାତନ ପରିଚ୍ଛଦ କାଢ଼ିଆଣି ଚଳନ୍ତି ପୋଷାକ ପିନ୍ଧାଇବାକୁ ପଡ଼ିଛି । କିନ୍ତୁ ଜ୍ଞାନତଃ ସେମାନଙ୍କର ମତ ଓ କଥାକୁ ବିକୃତ କରି ଆଧୁନିକ ମତ ଓ କଥା ସହିତ ସମାନ କରିବାକୁ ଚେଷ୍ଟା କରିନାହିଁ । ଯଦି ସେମାନଙ୍କର କଥା ଓ ମତ ପାଠକ ପାଖରେ ଆଧୁନିକ ଧରଣର ବୋଲି ମନେହୁଏ; ତେବେ ତାର କାରଣ, ଆମେ—ଆଧୁନିକମାନେ ଯେଉଁ ପ୍ରଶ୍ନକୁ ଯେଉଁ ପ୍ରଣାଳୀରେ ବିଚାର କରୁଛୁ, ପ୍ରାଚୀନ ଆଳଙ୍କାରିକମାନେ ବି ସେଇ ପ୍ରଶ୍ନକୁ ଠିକ୍ ସେଇ ଧାରାରେ ବିଚାର କରିଥିଲେ । ସେମାନଙ୍କର ପରିଭାଷା ଓ ପ୍ରକାଶଭଙ୍ଗୀ ଭିନ୍ନ, କିନ୍ତୁ ବକ୍ତବ୍ୟ ଏକ ।

ବିପରୀତ ସନ୍ଦେହ ବିରୁଦ୍ଧରେ କିଛି କହିବା ପ୍ରୟୋଜନ । ଏ ଗ୍ରନ୍ଥରେ ଆଳଙ୍କାରିକମାନଙ୍କର ସଂସ୍କୃତ ଉକ୍ତି କ୍ରମାଗତ ଉଦ୍ଧାର କରିଛି, ସଂସ୍କୃତ କବିମାନଙ୍କର କାବ୍ୟରୁ ବହୁ ଉଦାହରଣ ନେଇଛି—ବେଶୀ ଆଳଙ୍କାରିକ-ମାନେ ନେଇଥିବା ଓ ଅଳ୍ପ କିଛି ମୁଁ ନିଜେ ସଂଗ୍ରହ କରିଛି । ଏଥିରୁ ଯଦି କେହି ସନ୍ଦେହ କରନ୍ତି ଯେ, ଏହି ଗ୍ରନ୍ଥର ଆଲୋଚିତ କାବ୍ୟତତ୍ତ୍ୱ କେବଳ ମାତ୍ର ସଂସ୍କୃତ କବିମାନଙ୍କର କାବ୍ୟର ତତ୍ତ୍ୱ ଏବଂ ସଂସ୍କୃତ କାବ୍ୟସାହିତ୍ୟ ବାହାରେ ଏ ତତ୍ତ୍ୱର କୌଣସି ପ୍ରୟୋଗ ନାହିଁ—ତେବେ ଆଶ୍ଚର୍ଯ୍ୟ ହେବା ହୁଏତ ଅନୁଚିତ; ଯଦିବା ଇଂରେଜ କାବ୍ୟସମାଲୋଚକମାନଙ୍କର ଇଂରାଜୀ ଉକ୍ତି ଉଦ୍ଧୃତ କରି ଇଂରାଜୀ କବିମାନଙ୍କର କାବ୍ୟରୁ ଉଦାହରଣ ଦେଇ ଲେଖିଲେ; ତାହାର ଏ ସନ୍ଦେହ ହୁଅନ୍ତା ନାହିଁ ଯେ—ତତ୍ତ୍ୱଗୁଡ଼ିକ କେବଳ ଇଂରାଜୀ କାବ୍ୟସାହିତ୍ୟ ସମ୍ବନ୍ଧରେ ସତ୍ୟ, ଆଉ କେଉଁ କାବ୍ୟ-ସାହିତ୍ୟ ସମ୍ବନ୍ଧରେ ସତ୍ୟ ନୁହେଁ । ସଂସ୍କୃତ ଆଳଙ୍କାରିକମାନଙ୍କର ଯେଉଁ-ସବୁ କଥା ଓ ମତାମତର ଆଲୋଚନା କରିଛି, ତାହା ଯଦି ସବୁ କାବ୍ୟ-

ସାହିତ୍ୟରେ ସମାନ ପ୍ରଯୁଜ୍ୟ ନ ହୁଅନ୍ତା, ତେବେ ସେଗୁଡ଼ାକ ହୁଅନ୍ତା ପ୍ରନ୍ତାନ୍ତିକର ଆଲୋଚ୍ୟ ଏବଂ ଆମ୍ଭଭଳ ଆମେଚେୟୁରମାନଙ୍କର ବିଭୀଷିକା । ସେମାନଙ୍କର ଆଲୋଚନା ଓ ମୀମାଂସା ବିଶ୍ୱଜନୀନ ଓ ସକଳ କାବ୍ୟସାଧାରଣ ଏଇ ଧାରଣା ଓ ବିଶ୍ୱାସରେ ସେଗୁଡ଼ିକର ପରିଚୟ ଦେବାକୁ ଉତ୍ସାହିତ ହୋଇଛି । ଯଦି ସେ ପରିଚୟରେ ପାଠକଙ୍କର ଧାରଣା ଅନ୍ୟପ୍ରକାର ହୁଏ, ତେବେ ସେ ତ୍ରୁଟି ମୋର, ସଂସ୍କୃତ ଆଳଙ୍କାରିକ ବା କବିମାନଙ୍କର ନୁହେଁ । ମନୁଷ୍ୟ ବିଶେଷକୁ ପରୀକ୍ଷା କରି ହିଁ ସାଧାରଣକୁ ପାଇଥାଏ, କାରଣ ସାଧାରଣ ହେଉଛି ଯାହା ନାନା ବିଶେଷ ମଧ୍ୟରେ ସାଧାରଣଭାବେ ଅବସ୍ଥିତ । ସେଥିପାଇଁ ସବୁ ବିଶେଷକୁ ପରୀକ୍ଷା କରିବାର ପ୍ରୟୋଜନ ହୁଏ ନାହିଁ, ତାହା ଅସମ୍ଭବ । ଯା'ର ସେପରି ଦୃଷ୍ଟି ଅଛି ସେ ଗୋଟିଏ ବିଶେଷକୁ ପରୀକ୍ଷା କରି ସାଧାରଣକୁ ଚିହ୍ନି ପାରେ । ସଂସ୍କୃତ କବିଙ୍କ କାବ୍ୟରେ ଯଦି କାବ୍ୟତ୍ୱ ଥାଏ ଓ ସଂସ୍କୃତ ଆଳଙ୍କାରିକମାନଙ୍କର ଯଦି ତତ୍ତ୍ୱଦର୍ଶିତାର ଅଭାବ ନଥାଏ, ତେବେ ବିଶ୍ୱସାହିତ୍ୟର ଖବର ନରଖି ମଧ୍ୟ, ଆଳଙ୍କାରିକ-ମାନଙ୍କର ସକଳ କାବ୍ୟର ମୂଳତତ୍ତ୍ୱ ଆବିଷ୍କାର ବିଷୟରେ କିଛି ସନ୍ଦେହ ରହେ ନାହିଁ । ଯେପରି ଇଂରାଜୀ ସମାଲୋଚକମାନେ ସଂସ୍କୃତ କାବ୍ୟ-ସାହିତ୍ୟର କୌଣସି ଖବର ନରଖି ସକଳ କାବ୍ୟସାଧାରଣ କାବ୍ୟତ୍ୱ ନେଇ ଆଲୋଚନା କରିପାରନ୍ତି । ଆରିଷ୍ଟଟଲ 'ପୋଏଟିକସ୍' ଲେଖି-ଥିଲେ, କିନ୍ତୁ ଗ୍ରୀକ୍ କାବ୍ୟସାହିତ୍ୟ ବ୍ୟତୀତ ଆଉ କୌଣସି କାବ୍ୟ-ସାହିତ୍ୟ ସହିତ ତାଙ୍କର ପରିଚୟ ନଥିଲା । 'ସବୁଜପତ୍ର'ରେ ଯେତେ-ବେଳେ ଏଇ ପ୍ରବନ୍ଧଗୁଡ଼ିକ ପ୍ରକାଶିତ ହେଲା, ସେତେବେଳେ ଜଣେ ଦୁଇଜଣ ପଣ୍ଡିତ ଲୋକ ଏଗୁଡ଼ିକର ବିଶ୍ୱଜନୀନତ୍ୱ ବିଷୟରେ ସନ୍ଦେହ କରିଥିଲେ—ସେଥିପାଇଁ ଏଇ କଥାଗୁଡ଼ିକ କହିବାକୁ ହେଲା ।

ଏଇ ଗ୍ରନ୍ଥରେ ଦୁଇଜଣ ଆଳଙ୍କାରିକଙ୍କ ଲେଖା ଉପରେ ପ୍ରଧାନତଃ ନିର୍ଭର କରିଛି—ଆନନ୍ଦବର୍ଦ୍ଧନ ଓ ଅଭିନବଗୁପ୍ତ । ଏ ଦୁହେଁ କାଶ୍ମୀର ଅଧିବାସୀ ଥିଲେ । ଆନନ୍ଦବର୍ଦ୍ଧନ ସମ୍ଭବତଃ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀର ମଧ୍ୟଭାଗର ଲୋକ । ସେ ସୁପ୍ରସିଦ୍ଧ 'ଧ୍ୱନ୍ୟାଲୋକ' ଗ୍ରନ୍ଥର ବୃତ୍ତି ଅଂଶର

ଲେଖକ । ଧ୍ୱନ୍ୟାଲୋକ ଗ୍ରନ୍ଥଟି ଅନ୍ୟାନ୍ୟ ଅନେକ ଅଳଙ୍କାର ପୋଥି ପରି କାରିକା ଓ ସେଗୁଡ଼ିକର ବୃତ୍ତିର ସମଷ୍ଟି । ଏଇ କାରିକା ଓ ବୃତ୍ତି ସାଧାରଣତଃ ଜଣେ ଲେଖକଙ୍କର ଲେଖା ହୋଇଥାଏ । ଲେଖକ କାରିକାରେ ବକ୍ତବ୍ୟ ସଂକ୍ଷେପରେ କହି, ବୃତ୍ତିରେ ତାହାର ବିଶଦ ଆଲୋଚନା କରିଥାନ୍ତି । କିନ୍ତୁ ସହଜରେ ଜଣାଯାଏ ଯେ, ଧ୍ୱନ୍ୟାଲୋକର କାରିକାର ଶ୍ଳୋକ ଓ ବୃତ୍ତିର ଆଲୋଚନା ଜଣେ ଲୋକର ଲେଖା ନୁହେଁ । ଏଇ ବୃତ୍ତିରେ ଆନନ୍ଦବର୍ଦ୍ଧନ 'ଧ୍ୱନିବାଦ'ର ମତଟିକୁ ପୂର୍ଣ୍ଣାଙ୍ଗ କରି ଗଢ଼ିଛନ୍ତି; କିନ୍ତୁ କାରିକାର ଶ୍ଳୋକଗୁଡ଼ିକରେ କୌଣସି ବିଶେଷ ମତ ସ୍ଥିରୀକୃତ ହୋଇପାରିନି । ଗୋଟିଏ ପରମ ରସଗ୍ରାହୀ ମନର ଗଭୀର ଅନୁଭୂତି ଏହି କାରିକାଗୁଡ଼ିକରେ ପ୍ରକାଶିତ ହୋଇଛି । ଏହାର ଗୋଟିଏ ଗୋଟିଏ ଶ୍ଳୋକ ଉଜ୍ଜ୍ୱଳ ଦୀପଶିଖା ପରି ପାଠକର ମନକୁ ଆଲୋକରେ ଭରିଦିଏ । ମୋର ଏହି କ୍ଷୁଦ୍ର ଗ୍ରନ୍ଥଟିରେ ହିଁ ପାଠକ ତାର ଅନେକ ଉଦାହରଣ ପାଇବେ । କିନ୍ତୁ ଏଇ ସହୃଦୟ ଲେଖକଙ୍କର ନାମ ପର୍ଯ୍ୟନ୍ତ ଆମ୍ଭମାନଙ୍କର ଅଜ୍ଞାତ ଏବଂ ଏକାଦଶ ଖ୍ରୀଷ୍ଟାବ୍ଦର ଶେଷଭାଗରୁ ସଂସ୍କୃତ ଆଳଙ୍କାରିକ ସମାଜରେ ବି ଅଜ୍ଞାତ ଥିଲା ବୋଲି ମନେହୁଏ । କାରଣ ଅନେକ ଆଳଙ୍କାରିକ ଆନନ୍ଦବର୍ଦ୍ଧନଙ୍କୁ ହିଁ କାରିକାର ଲେଖକ ବୋଲି ଉଲ୍ଲେଖ କରିବାକୁ ଦ୍ୱିଧାବୋଧ କରିନାହାନ୍ତି । ସମ୍ଭବତଃ ବୃତ୍ତିକାର ଆନନ୍ଦବର୍ଦ୍ଧନଙ୍କର ପାଣ୍ଡିତ୍ୟର ଖ୍ୟାତି ତଳେ ଏହି ରସଜ୍ଞ କାରିକାକାରଙ୍କ ନାମ ଚାପାପଡ଼ିଯାଇଛି । କିନ୍ତୁ ଧ୍ୱନିବାଦର ଅନ୍ଧାଳକାର ଅନେକ ପାଣ୍ଡିତ୍ୟର ଇଟା ଆଜି ଖସିପଡ଼ିଲେ ବି, ଏହି କାରିକାଗୁଡ଼ିକର ଜ୍ୟୋତି ଅନିର୍ବାଣ ରହିଛି । ଏହି ଅଜ୍ଞାତନାମା ରସିକ ଶ୍ରେଷ୍ଠଙ୍କ ସ୍ମୃତି ଉଦ୍ଦେଶ୍ୟରେ ଶ୍ରଦ୍ଧା ନିବେଦନ କରୁଛି ।

ଅଭିନବଗୁପ୍ତଙ୍କର ନିଜ ଲେଖାରୁ ହିଁ ଜଣାପଡ଼େ ଯେ, ସେ ଖ୍ରୀଷ୍ଟୀୟ ଦଶମ ଶତକ ଶେଷଭାଗ ଓ ଏକାଦଶ ଶତକ ପ୍ରଥମ ଭାଗର ଲୋକ । ସିଏ ବହୁଶାସ୍ତ୍ରଦର୍ଶୀ ସୁପଣ୍ଡିତ ଥିଲେ ଓ ଶୈବଦର୍ଶନ ସମ୍ବନ୍ଧରେ ନାନା ଗ୍ରନ୍ଥ ରଚନା କରି ଖୁବ୍ ପ୍ରସିଦ୍ଧି ଲାଭ କରିଥିଲେ । କାବ୍ୟତତ୍ତ୍ୱ ସମ୍ବନ୍ଧରେ ତାଙ୍କର ଦୁଇଟି ପ୍ରଧାନ ଗ୍ରନ୍ଥ ହେଉଛି ଧ୍ୱନ୍ୟାଲୋକର ଲୋଚନ ନାମରେ

ଟୀକା ଏବଂ ଭରତ ନାଟ୍ୟଶାସ୍ତ୍ରର ଅଭିନବ ଭାରତୀ ନାମରେ ସୁବିସ୍ତୃତ ବିବୃତି ବା ଭାଷ୍ୟ । ମୋର ଏହି ଗ୍ରନ୍ଥରେ ଧ୍ୱନ୍ୟାଲୋକର ଟୀକାରୁ ହିଁ ଅଭିନବଗୁପ୍ତଙ୍କ ମତ ଓ ଲେଖା ଉଦ୍ଧାର କରିଛି । ଯେଉଁ ରସବାଦ ସଂସ୍କୃତ ଆଳଙ୍କାରିକମାନଙ୍କର କାବ୍ୟଜିଜ୍ଞାସାର ଚରମ ମୀମାଂସା, ଅଭିନବଗୁପ୍ତ ଥିଲେ ତାହାର ସର୍ବପ୍ରଧାନ ଆଚାର୍ଯ୍ୟ । ଯେଉଁ ତତ୍ତ୍ୱ ପୂର୍ବରୁ ଅସ୍ଫୁଟ, ଅସୁବ୍ୟକ୍ତ ଓ ଅପୂର୍ଣ୍ଣାଙ୍ଗ ଥିଲା ଆଚାର୍ଯ୍ୟ ଅଭିନବଗୁପ୍ତ ତାକୁ ଅନବଦ୍ୟ ସର୍ବାଙ୍ଗ ରୂପଦେଇ ରସିକସମାଜରେ ପରିସ୍ଫୁଟ ଓ ପ୍ରତିଷ୍ଠିତ କରିଛନ୍ତି । ଏହି ବହିରେ ଧ୍ୱନ୍ୟାଲୋକ ଲୋଚନରୁ ତାଙ୍କର ଯେଉଁସବୁ ରଚନା ଉଦ୍ଧୃତ ହୋଇଛି, ସେଥିରୁ ହିଁ ପାଠକବର୍ଗ ଅଭିନବଗୁପ୍ତଙ୍କର ଚିନ୍ତାର ତୀକ୍ଷ୍ଣତା, ବିଶ୍ଳେଷଣ ନୈପୁଣ୍ୟ ଓ ରସଦୃଷ୍ଟିର ଗମ୍ଭୀରତାର ପରିଚୟ ପାଇବେ । ତାଙ୍କର ଅନ୍ୟ ଏକ ଗ୍ରନ୍ଥ ଅଭିନବଭାରତୀ ଏପର୍ଯ୍ୟନ୍ତ ଦୁଷ୍ପ୍ରାପ୍ୟ ଥିଲା । ସମ୍ପ୍ରତି Gaekwad's Oriental Seriesରେ ଶ୍ରୀଯୁକ୍ତ ମନବଲ୍ଲୀ ରାମକୃଷ୍ଣ କବି ମହାଶୟ ଅଭିନବଭାରତୀ ସହ ଭରତ ନାଟ୍ୟ-ଶାସ୍ତ୍ର ଚାରିଖଣ୍ଡରେ ପ୍ରକାଶ କରିଛନ୍ତି । ତାହାର ପ୍ରଥମ ଖଣ୍ଡ ପ୍ରକାଶ ପାଇଛି ଏବଂ ନାଟ୍ୟଶାସ୍ତ୍ରର ଷଷ୍ଠ ଅଧ୍ୟାୟରେ ରସର ଯେଉଁ ପରିଚୟ ଓ ବିଚାର ଅଛି, ଅଭିନବଗୁପ୍ତଙ୍କର ଭାଷ୍ୟସହ ସେହି 'ରସାଧ୍ୟାୟ'ଟି ଏହି ଖଣ୍ଡରେ ଛପା ହୋଇଛି । କାବ୍ୟତତ୍ତ୍ୱଜିଜ୍ଞାସୁମାନଙ୍କ ପାଇଁ ଏହା ଆନନ୍ଦ-ଦାୟକ ସମ୍ବାଦ । କିନ୍ତୁ ଅଭିନବ-ଭାରତୀର ଯେଉଁ କେତେଗୋଟି ମୂଳ ପୋଥି କବି ମହାଶୟ ପାଇଛନ୍ତି, ସେଥିମଧ୍ୟରୁ ଗୋଟିଏ ବି ସମ୍ପୂର୍ଣ୍ଣ ନୁହେଁ, ତା'ଛଡ଼ା ସବୁଗୁଡ଼ିକ ଏତେ ଭ୍ରମପୂର୍ଣ୍ଣ ଯେ ସେଥିରୁ ଅନେକକ୍ଷେ ପ୍ରକୃତ ପାଠ ନିର୍ଣ୍ଣୟ ଅସମ୍ଭବ । କବି ମହାଶୟ ଥଟ୍ଟା କରି କହିଛନ୍ତି, ସ୍ୱୟଂ ଅଭିନବଗୁପ୍ତ ସ୍ୱର୍ଗରୁ ଆସିଲେ ବି ଏଇସବୁ ପୋଥିରୁ ତାଙ୍କର ମୂଳପାଠ ଉଦ୍ଧାର କରିପାରି ନଥାନ୍ତେ । ସେ ଯାହାହେଉ, ଆମ ପରି ଅପଣ୍ଡିତ ଲୋକମାନଙ୍କର କାମ ସେଇଥିରେ ହିଁ ଅନେକଟା ଚଳିଯାଏ । କାରଣ ଅଭିନବଗୁପ୍ତଙ୍କର ମନ କଥାଟା ମୋଟାମୋଟି ଉପରେ ସେଥିରୁ ଧରିହୁଏ ।

ଏହି ଭୂମିକାରେ ଆନନ୍ଦବର୍ଦ୍ଧନ ଓ ଅଭିନବଗୁପ୍ତଙ୍କର ଦେଶ-କାଳର ଖବର ଯାହା ଦେଇଛି, ତାହା ଶ୍ରୀଯୁକ୍ତ ସୁଶୀଲ କୁମାର ଦେ

ପ୍ରଣୀତ Studies in the history of Sanskrit Poetics' ଗ୍ରନ୍ଥର ପ୍ରଥମ ଖଣ୍ଡରୁ ସଂଗ୍ରହ କରିଛି । ସେଥିପାଇଁ ତାଙ୍କ ପାଖରେ ମୋର ଋଣ ସ୍ୱୀକାର କରୁଛି । କୌତୂହଳୀ ପାଠକ ସୁଶୀଲବାବୁଙ୍କର ଗ୍ରନ୍ଥରେ ସେଇ ଦୁଇ ଆଳଙ୍କାରିକଙ୍କର ଆହୁରି କଛି ପରିଚୟ ପାଇବେ । ମୋର ଏହି କ୍ଷୁଦ୍ର ବହିଟି ରସିକ ଓ ଭାବୁକ ସମାଜରେ ଉପସ୍ଥାପିତ କରି ପ୍ରାର୍ଥନା କରୁଛି ଯେ, ଆମ ଦେଶର ପ୍ରାଚୀନ ଓ ନବୀନ ରସିକମାନଙ୍କ ଭିତରେ ତତ୍ତ୍ୱବୁଦ୍ଧିର ଯୋଗାଯୋଗ ସ୍ଥାପିତ ହେଉ ।

ଆଶ୍ୱିନ, ୧୩୩୫

**ଅତୁଲ ଚନ୍ଦ୍ର ଗୁପ୍ତ**

# ଅନୁବାଦ ସମ୍ପର୍କରେ

କାବ୍ୟତତ୍ତ୍ୱ ଓ ଅଳଙ୍କାରଶାସ୍ତ୍ର ଭାରତୀୟ ଦର୍ଶନ ପରି ଗୂଢ଼ ଅଥଚ ଏକ କୌତୂହଳପୂର୍ଣ୍ଣ ବିଷୟ । ବିଶୁଦ୍ଧ ତତ୍ତ୍ୱଜିଜ୍ଞାସୁମାନେ ହିଁ ଏହାର ପ୍ରକୃତ ଗ୍ରାହକ ଓ ଆଲୋଚକ ହେବାକୁ ଯୋଗ୍ୟ । ଆଧୁନିକ ଭାରତୀୟ ସାହିତ୍ୟରେ ଏହିପରି କେତେଜଣ ତତ୍ତ୍ୱଜିଜ୍ଞାସୁମାନଙ୍କ ମଧ୍ୟରୁ ଏହି କ୍ଷୁଦ୍ର ଗ୍ରନ୍ଥର ରଚୟିତା ସ୍ୱର୍ଗତ ଅତୁଲ ଚନ୍ଦ୍ର ଗୁପ୍ତ ଅନ୍ୟତମ । 'କାବ୍ୟଜିଜ୍ଞାସା' ନାମିତ ବଙ୍ଗଳାରେ ତାଙ୍କର ଏହି କ୍ଷୁଦ୍ର ଅଥଚ ସାରବାନ୍ ଗ୍ରନ୍ଥଟି ସାହିତ୍ୟର ଛାତ୍ର ଓ ଅଧ୍ୟାପକମାନଙ୍କ ପାଇଁ ଏକ ଅମୂଲ୍ୟ ସହାୟକ ଗ୍ରନ୍ଥ ଭାବରେ ବିବେଚିତ । ଏଥିରେ 'ଧ୍ୱନି', 'ରସ' ପ୍ରଭୃତି ଭାରତୀୟ କାବ୍ୟ-ତତ୍ତ୍ୱର ପ୍ରଧାନ ସରଣୀଗୁଡ଼ିକର ଆଲୋଚନା କେବଳ ସ୍ଥାନ ପାଇଛି ତାହା ନୁହେଁ, ସାହିତ୍ୟର ସାମଗ୍ରିକ ଅର୍ଥ ସହିତ ଭାରତୀୟ ପରମ୍ପରାରେ ପ୍ରତିଷ୍ଠିତ ଜୀବନବୋଧ ଓ ସାହିତ୍ୟବୋଧର ସୂକ୍ଷ୍ମ ସମ୍ପର୍କର ଆପାତଃ ଗୂଢ଼ ରହସ୍ୟକୁ ବିଶ୍ୱସାହିତ୍ୟର ବହୁ ତୁଳନା ଓ କଳନା ଭିତରେ ସୁନ୍ଦର ଓ ସଂକ୍ଷିପ୍ତ ଭାବେ ଉପସ୍ଥାପନା କରାଯାଇଛି ।

ବିଶ୍ୱଭାରତୀ, ଶାନ୍ତିନିକେତନରେ ସ୍ନାତକୋତ୍ତର ଶ୍ରେଣୀରେ ସାହିତ୍ୟ-ତତ୍ତ୍ୱ ଓ ଅଳଙ୍କାରଶାସ୍ତ୍ର ପଢ଼ୁଥିଲାବେଳେ ଓଡ଼ିଆରେ 'କାବ୍ୟଜିଜ୍ଞାସା' ପରି ଏକ କ୍ଷୁଦ୍ର ଅଥଚ ଯଥାର୍ଥ ମୂଲ୍ୟବାନ୍ ବହିର ଅଭାବ ଅନୁଭବ କରି ମୁଁ ଏହି ବହିଟିର ଓଡ଼ିଆ ଅନୁବାଦ କରିବାପାଇଁ ମନସ୍ଥ କରିଥିଲି । ଏ ଦିଗରେ ମତେ ବିଶେଷଭାବେ ଉତ୍ସାହିତ କରିଥିଲେ କୃତବିଦ୍ୟ ଇଂରାଜୀ ପ୍ରଫେସର ଶିଶିର କୁମାର ଘୋଷ ଓ ବଙ୍ଗଳାର ରବୀନ୍ଦ୍ର ଅଧ୍ୟାପକ ସତ୍ୟେନ୍ଦ୍ରନାଥ ରାୟ । ଶିଶିରଦାଙ୍କ ବ୍ୟକ୍ତିଗତ ଗ୍ରନ୍ଥାଗାରରୁ ବହିଟି ଆଣି ମୁଁ କିଛି ଅଂଶ ଅନୁବାଦ କରିଥିଲି । କିନ୍ତୁ ଅନୁବାଦ କାର୍ଯ୍ୟ ଶେଷ ହେଲା ଅନେକ ପରେ । ପ୍ରଫେସର ଘୋଷ ଆଜି ସ୍ୱର୍ଗତ । ଆଜି ତାଙ୍କ ଅମର ଆତ୍ମା ପ୍ରତି ଭକ୍ତିପୂତ ଶ୍ରଦ୍ଧା ନିବେଦନ କରୁଛି । ବିଷୟର ଗମ୍ଭୀରତା ଓ

ଜଟିଳତା ହେତୁ ଅନୁବାଦ ଶେଷ କରି ମୁଁ ତାକୁ ନିଜେ ବାରମ୍ବାର ପଢ଼ିଛି ଓ ଅନ୍ୟମାନଙ୍କୁ ଦେଖାଇଛି । ଉତ୍କଳ ବିଶ୍ୱବିଦ୍ୟାଳୟର ସଂସ୍କୃତ ବିଭାଗ ପ୍ରାଧ୍ୟାପକ ଓ ଭାରତୀୟ ନନ୍ଦନତତ୍ତ୍ୱର ଗବେଷକ ଡଃ ପ୍ରଫୁଲ୍ଲ କୁମାର ମିଶ୍ର ଅନୁବାଦଟିକୁ ସମ୍ପୂର୍ଣ୍ଣ ପଢ଼ି ଯଥୋଚିତ ସଂଶୋଧନ କରିଛନ୍ତି । ପାଣ୍ଡୁଲିପି ପ୍ରସ୍ତୁତ ଓ ଶୁଦ୍ଧ ପାଦଟୀକା ଲିଖନ ପ୍ରଭୃତିରେ ସାହାଯ୍ୟ କରିଛନ୍ତି ଅଧ୍ୟାପିକା ମୃଦୁଲା ମିଶ୍ର ଓ ଅଧ୍ୟାପକ ବଳରାମ ମିଶ୍ର । ଏମାନେ ସମସ୍ତେ ମୋର ଧନ୍ୟବାଦାର୍ହ ।

ମୋର ସାର୍ ପ୍ରଫେସର ଖଗେଶ୍ୱର ମହାପାତ୍ର ଅନୁବାଦଟିକୁ ସମୀକ୍ଷା କରି ସୁମନ୍ତବ୍ୟ ଦେଇ ବିଶ୍ୱଭାରତୀ ଗ୍ରନ୍ଥନ ବିଭାଗ ପକ୍ଷରୁ ଅନୁମତି ପ୍ରଦାନ କରି ଗ୍ରନ୍ଥଟିର ପ୍ରକାଶ ପାଇଁ ମତେ ସାହାଯ୍ୟ କରିଛନ୍ତି । ଏଥିପାଇଁ ବିଶ୍ୱଭାରତୀ ଗ୍ରନ୍ଥନ ବିଭାଗ କର୍ତ୍ତୃପକ୍ଷ ଓ ପ୍ରଫେସର ମହାପାତ୍ରଙ୍କ ନିକଟରେ ମୁଁ କୃତଜ୍ଞ ।

ବହିଟିର ପ୍ରକାଶନ ଭାର ବହନ କରି ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ ପକ୍ଷରୁ ଶ୍ରୀ ଚନ୍ଦ୍ରଦେବ ପ୍ରଧାନ ଓ ତାଙ୍କ କନିଷ୍ଠ ପୁତ୍ର ସୁଧାଂଶୁ ଶେଖର ପ୍ରଧାନ ମତେ କୃତଜ୍ଞ କରିଛନ୍ତି ।

'କାବ୍ୟଜିଜ୍ଞାସା' କାବ୍ୟତତ୍ତ୍ୱଜିଜ୍ଞାସୁ ପାଠକ, ଆଲୋଚକ ଓ ସାହିତ୍ୟତତ୍ତ୍ୱ ଅଧ୍ୟୟନରତ ଛାତ୍ରଛାତ୍ରୀମାନଙ୍କ ସଂଶୟ ନିରସନ ଦିଗରେ ସହାୟକଗ୍ରନ୍ଥ ଭାବେ ସାହାଯ୍ୟ କଲେ ଏ ସକଳ ଉଦ୍ୟମ ସାର୍ଥକ ହେବ ।

**ବସନ୍ତ କୁମାର ପଣ୍ଡା**

# ଧ୍ୱନି

ଇହୁଦୀ ଓ ଖ୍ରୀଷ୍ଟିଆନ୍ ଧର୍ମ ପୋଥିରେ ଲେଖାଅଛି ଯେ, ବିଧାତା ସ୍ୱ ଆକାଂକ୍ଷା ବଳରେ ଆକାଶ ପୃଥିବୀ, ଆଲୁଅ ଅନ୍ଧାର, ସୂର୍ଯ୍ୟ-ଚନ୍ଦ୍ର ସବୁ ସୃଷ୍ଟି କରି ଦେଖିଲେ ଏହି ସୃଷ୍ଟି ଅତି ଚମତ୍କାର । ଏଥିରେ କୁହାଯାଇଛି, ସୃଷ୍ଟିକର୍ତ୍ତା ମନୁଷ୍ୟକୁ ତିଆରି କରିଛନ୍ତି ନିଜର ପ୍ରତିରୂପ କରି, ଆଉ ନିଜର ନିଶ୍ୱାସ ବାୟୁରେ ତା'ର ପ୍ରାଣପ୍ରତିଷ୍ଠା କରିଛନ୍ତି । ଅର୍ଥାତ୍, ମନୁଷ୍ୟ ଯେଉଁଠି ସ୍ରଷ୍ଟା, ତା'ର ସୃଷ୍ଟିର ରହସ୍ୟ ବିଶ୍ୱସୃଷ୍ଟି ରହସ୍ୟର ହିଁ ପ୍ରତିଚ୍ଛାୟା ଅଥବା ଭିନ୍ନଭାବରେ କହିଲେ ନିଜ ସୃଷ୍ଟିର ସ୍ୱରୂପ ଛଡ଼ା ସୃଷ୍ଟିତତ୍ତ୍ୱ-ଆୟତ୍ତ କରିବାର ଅନ୍ୟ କୌଣସି ଚାବି ମଣିଷ ହାତରେ ନାହିଁ । ବାଇବେଲର ବିଧାତା ପରି ମଣିଷ ଅନ୍ତରାତ୍ମାର ଉତ୍ସାରିତ ଆକାଂକ୍ଷାରେ ଯାହା ସୃଷ୍ଟି କରେ, ତା'ର ଚମତ୍କାରିତା ନିଜକୁ ହିଁ ବିସ୍ମିତ କରିଦିଏ । ବହିର୍ବିଶ୍ୱର ସ୍ୱରୂପ ଓ ସୃଷ୍ଟିକୌଶଳ ଆବିଷ୍କାର କରିବାରେ ଯେଭଳି ମଣିଷର ବୁଦ୍ଧିର ବିରାମ ନାହିଁ, ନିଜର ସୃଷ୍ଟିର ସ୍ୱରୂପ ଓ କୌଶଳ ବିଷୟକ ଜ୍ଞାନ ଆହରଣରେ ମଧ୍ୟ ଔତ୍ସୁକ୍ୟର ସୀମା ନାହିଁ । କାରଣ ସେହି ସୃଷ୍ଟି ମଧ୍ୟ ମନୁଷ୍ୟର ବୁଦ୍ଧି ନିକଟରେ ବହିର୍ବିଶ୍ୱ ପରି ହିଁ ରହସ୍ୟମୟ ।

ରାମାୟଣରେ କାବ୍ୟ ଜନ୍ମକଥାର ଯେଉଁ କାବ୍ୟେତିହାସ ଅଛି, ସେଥିରେ ମଣିଷ ସୃଷ୍ଟିର ଏଇ ତତ୍ତ୍ୱ ହିଁ କାବ୍ୟସୃଷ୍ଟି ସମ୍ବନ୍ଧରେ କୁହାଯାଇଛି । କ୍ରୌଞ୍ଚ ଦ୍ୱନ୍ଦ୍ୱବିୟୋଗ ଶୋକରେ ଯେତେବେଳେ ବାଲ୍ମୀକିଙ୍କ ମୁଖରୁ 'ମା ନିଷାଦ ପ୍ରତିଷ୍ଠାଂ' ଇତ୍ୟାଦି ବାକ୍ୟ ଆପେ ଆପେ ଉଚ୍ଚାରିତ ହେଲା ସେତେବେଳେ—

'ତସ୍ୟେତ୍ଥଂ ବ୍ରୁବତାଶ୍ଚିନ୍ତା ବଭୂବ ହୃଦି-ବୀକ୍ଷତଃ<br>
ଶୋକାର୍ତ୍ତେନାସ୍ୟ ଶକୁନେଃ କିମିଦଂ ବ୍ୟାହୃତଂ ମୟା ।'

କ୍ରୌଞ୍ଚଶୋକ ମୁନି ହୃଦୟରେ ତାଙ୍କର ଉଦୟ ହେଲା, ପକ୍ଷୀର ଶୋକରେ ଶୋକାର୍ତ୍ତ ହୋଇ ଯାହା ମୁଁ ଉଚ୍ଚାରଣ କଲି—ଏହା କ'ଣ ? ସେତେବେଳେ ନିଜର ପ୍ରଜ୍ଞା ବଳରେ ସେ ଏହାର ପ୍ରକୃତ ତତ୍ତ୍ୱ ଧରିବାରେ ଲାଗିଲେ—

'ଚିନ୍ତୟନ୍ ସ ମହାପ୍ରାଜ୍ଞଶ୍ଚକାର ମତିମାନ୍ ମତିମ୍'

ଏବଂ ଶିଷ୍ୟଙ୍କୁ କହିଲେ—

'ପାଦବଦ୍ଧୋଽକ୍ଷରସମସ୍ତନ୍ତ୍ରୀଲୟସମନ୍ୱିତଃ
ଶୋକାର୍ତ୍ତସ୍ୟ ପ୍ରବୃତ୍ତୋ ମେ ଶ୍ଳୋକୋ ଭବତୁ ନାନ୍ୟଥା'

ଏଇ ବାକ୍ୟ ପାଦବଦ୍ଧ, ଏହାର ପ୍ରତିପଦ ସମାକ୍ଷର, ଛନ୍ଦ-ତନ୍ତ୍ରୀଲୟରେ ଏହା ଆନ୍ଦୋଳିତ; ମୁଁ ଶୋକାର୍ତ୍ତ ଚିତ୍ତରେ ଏହାକୁ ଉଚ୍ଚାରଣ କରିଛି, ଏହାର ନାମ ଶ୍ଳୋକ ହେଉ ।

ରାମାୟଣକାର ଆଦିକବିଙ୍କ ମୁଖରୁ ଯେଉଁ କୌତୂହଳ ପ୍ରକାଶ ପାଇଛି, ତାହା କାବ୍ୟରସିକ ମାନବ ମନର ସାଧାରଣ କୌତୂହଳ । ମହାକବିମାନଙ୍କର ପ୍ରତିଭା ଏହିପରି ଯେଉଁ ଅପୂର୍ବ ମନୋହର ଶବ୍ଦବନ୍ଧ ସୃଷ୍ଟି କରେ, ଏହା କି ବସ୍ତୁ ? ଏହାର ସ୍ୱରୂପ କ'ଣ ? ତାହାର ଉତ୍ତରରେ ଯେଉଁ ଆଲୋଚନାର ଉତ୍ପତ୍ତି, ଆମ ଦେଶର ପ୍ରାଚୀନପଣ୍ଡିତମାନେ ତା'ର ନାମ ଦେଇଛନ୍ତି ଅଳଙ୍କାରଶାସ୍ତ୍ର । ସେହି ଶାସ୍ତ୍ରର ପ୍ରଧାନକଥା କାବ୍ୟ-ଜିଜ୍ଞାସା । କାବ୍ୟର କାବ୍ୟତ୍ୱ କେଉଁଠି ? କେଉଁ ଗୁଣରୁ ବାକ୍ୟ ଓ ସନ୍ଦର୍ଭ କାବ୍ୟ ହୁଏ ? ଆଳଙ୍କାରିକମାନଙ୍କର ଭାଷାରେ କାବ୍ୟର ଆତ୍ମା କ'ଣ ?

କାବ୍ୟର ଆତ୍ମା ଯାହାହେଉ, ଏହାର ଶରୀର ହେଉଛି ବାକ୍ୟ—ଅର୍ଥଯୁକ୍ତପଦସମୁଚ୍ଚୟ । ସୁତରାଂ କାବ୍ୟ ଦର୍ଶନରେ ଯେଉଁମାନେ ଦେହାତ୍ମବାଦୀ, ସେମାନେ କହନ୍ତି, ଏଇ ବାକ୍ୟ ଅର୍ଥାତ୍ ଶବ୍ଦ ଓ ଅର୍ଥ ଛଡ଼ା କାବ୍ୟର ଆଉ ସ୍ୱତନ୍ତ୍ର ଆତ୍ମା ନାହିଁ । ବାକ୍ୟର ଶବ୍ଦ ଓ ଅର୍ଥକୁ ସାଦାସିଧା ନରଖି ସାଜସଜ୍ଜାରେ ସଜାଇଦେଲେ ହିଁ ବାକ୍ୟ କାବ୍ୟ ହୋଇଉଠେ । ଏଇ ସାଜସଜ୍ଜାର ନାମ ହିଁ ଅଳଙ୍କାର । ଶବ୍ଦକୁ ଅଳଙ୍କାରରେ (ଯେପରି ଅନୁପ୍ରାସରେ) ସଜାଇ ସୁନ୍ଦର କରାଯାଏ, ଅର୍ଥକୁ

ଉପମା, ରୂପକ, ଉତ୍ପ୍ରେକ୍ଷା ନାନା ଅଳଙ୍କାର ଦ୍ୱାରା ଗୁରୁତ୍ୱ ଦାନ କରାଯାଏ । କାବ୍ୟ ମନୁଷ୍ୟର ଉପାଦେୟ ହୋଇଥାଏ ଏହି ଅଳଙ୍କାର ଦ୍ୱାରା । 'କାବ୍ୟଂ ଗ୍ରାହ୍ୟମଳଙ୍କାରାତ୍ ।' (୧) ଏ ମତରୁ ବାଲକୋଚିତ ବୋଲି ଉଡ଼ାଇଦେବା ଠିକ୍ ନୁହେଁ । ଏଇ ମତରୁ ହିଁ କାବ୍ୟଜିଜ୍ଞାସାଶାସ୍ତ୍ରର ନାମ ହୋଇଛି ଅଳଂକାରଶାସ୍ତ୍ର । ଯେପରି ଅଧିକାଂଶ ଲୋକଙ୍କ ମତରେ ନହେଲେ ମଧ୍ୟ ଜୀବନରେ ଲୋକାଦୃତ ମତର ଅନୁବର୍ତ୍ତୀ, ଦେହଛଡ଼ା ଯେ ମଣିଷର ଆଉ କିଛି ଅଛି ସେମାନଙ୍କର ଜୀବନଯାତ୍ରା ତାହାର କୌଣସି ପ୍ରମାଣ ଦିଏନାହିଁ, ସେହିପରି ମୁଖର ମତାମତ ଛାଡ଼ି ଯଦି ଅନ୍ତରର କଥା ଧରାଯାଏ, ତେବେ ଦେଖାଯିବ ଅଧିକାଂଶ କାବ୍ୟ ପାଠକ କାବ୍ୟ-ବିଚାରରେ ଏଇ ଦେହାତ୍ମବାଦୀ । ସେମାନଙ୍କର କାବ୍ୟ ଆସ୍ୱାଦନ ଅଳଙ୍କାରଯୁକ୍ତ । ଶବ୍ଦ ଓ ଅର୍ଥର ଆସ୍ୱାଦନ । ଏବଂ ସେଥିପାଇଁ ଅନେକ ଲେଖକ, ଯେଉଁମାନଙ୍କର ରଚନା ଅଳଙ୍କୃତ ବାକ୍ୟଛଡ଼ା ଆଉ କିଛି ନୁହେଁ, ସେମାନେ ହିଁ ପୃଥିବୀର ସବୁ ଦେଶରେ କବି ପଦବୀ ଲାଭ କରିଛନ୍ତି ।

ଅଳଙ୍କାରବାଦୀମାନଙ୍କୁ ସମାଲୋଚନା କରି ଅନ୍ୟ ଆଳଙ୍କାରିକ-ମାନେ କହିଛନ୍ତି, କାବ୍ୟ ଯେ ଅଳଙ୍କୃତ ବାକ୍ୟ ନୁହେଁ ତା'ର ପ୍ରମାଣ, ଶବ୍ଦ ଓ ଅର୍ଥ ଦୁଇପ୍ରକାର ଅଳଙ୍କାର ଥାଇ ମଧ୍ୟ ବାକ୍ୟଟି କାବ୍ୟ ନୁହେଁ, ଏହାର ବହୁ ଉଦାହରଣ ଦିଆଯାଇପାରେ, ଆଉ ସର୍ବସମ୍ମତକ୍ରମେ ଯାହା ଅତି ଶ୍ରେଷ୍ଠକାବ୍ୟ, ତାହାର କୌଣସି ଅଳଙ୍କାର ନାହିଁ, ଏପରି ମଧ୍ୟ ଉଦାହରଣ ଅଛି । ଅର୍ଥାତ୍ ସମାଲୋଚକମାନଙ୍କର ନୟାୟିକ ଭାଷାରେ କାବ୍ୟର ଏହି ସଂଜ୍ଞାଟି ଅତିବ୍ୟାପ୍ତି ଓ ଅବ୍ୟାପ୍ତି ଦୁଇ ଦୋଷଦୁଷ୍ଟ । ଯେପରି 'ସାହିତ୍ୟଦର୍ପଣ'ର ଜଣେ ଟୀକାକାର ଉଦାହରଣ ଦେଇଛନ୍ତି—

'ତରଙ୍ଗକଙ୍କଣୋନ୍ନୀତ ତରୁଣୀଗଣସଂକୁଳା
ସରିଦ୍‌ବର୍ଦ୍ଧିତ କଲ୍ଲୋଳ ବ୍ୟୂହବ୍ୟାହତତୀରଭୂଃ'

ଏହି ବାକ୍ୟର ଶବ୍ଦ ଓ ଅର୍ଥ ଉଭୟରେ ଅନୁପ୍ରାସ ଓ ରୂପକ ଅଳଂକାର ରହିଛି, କିନ୍ତୁ ଏହାକୁ କେହି କାବ୍ୟ କହିବେ ନାହିଁ । ବାକ୍ୟ

---

୧ । ବାମନ

ଅନଳଂକୃତ ଅଥଚ ଶ୍ରେଷ୍ଠ କାବ୍ୟ, ଏହାର ଉଦାହରଣରେ ସାହିତ୍ୟ-ଦର୍ପଣକାର କୁମାରସମ୍ଭବର ଅକାଳବସନ୍ତ ବର୍ଣ୍ଣନାରୁ ଉଦାହରଣ ଦେଇଛନ୍ତି—

'ମଧୁ ଦ୍ୱିରେଫଃ କୁସୁମୈକ ପାତ୍ରେ ପପୌ ପ୍ରିୟାଂ ସ୍ୱାମନୁବର୍ତ୍ତମାନଃ
ଶୃଙ୍ଗେନ ଚ ସ୍ପର୍ଶନମୀଲିତାକ୍ଷୀ ମୃଗୀମକଣ୍ଡୂୟତଃ କୃଷ୍ଣସାରଃ'

ଏହାର ସ୍ଥାନେ ସ୍ଥାନେ ଯେ ଟିକଏ ଅନୁପ୍ରାସର ସ୍ପର୍ଶ ଅଛି, ତାଉଙ୍କନକରୋନ୍ନୀତ-ଚନ୍ଦ୍ରଶ୍ରୀଗଣ ପାଖରେ ତାହା କିଛି ନୁହେଁ, ଆଉ ଏହାର ଅର୍ଥ ଏକବାରେ ନିରଳଙ୍କାର । ଅକାଳବସନ୍ତର ଉଦ୍ଦୀପନାରେ ଯୌବନବସନ୍ତ ବନସ୍ଥଳୀରେ ଋତୁଦିଗ୍ବିଜୟୀ ମଦନର ସମାଗମରେ ତିର୍ଯ୍ୟକ୍-ପ୍ରାଣୀମାନଙ୍କର ଅନୁରାଗଲୀଳା ମାତ୍ର କାଳିଦାସ ଭାଷାରେ ପ୍ରକାଶ କରିଛନ୍ତି, ତାହାକୁ କୌଣସି ଅଳଙ୍କାରରେ ସଜାଇ ନାହାନ୍ତି । ଅଥଚ ମନୋହାରିତ୍ୱରେ ପାଠକର ମନକୁ ଏହା ମୁଗ୍ଧ କରିଦିଏ । ଅଳଙ୍କାର-ବାଦୀମାନେ କହିବେ, ଏଠି ମଧ୍ୟ ଅଳଙ୍କାର ରହିଛି—ଯାହାର ନାମ ସ୍ୱଭାବୋକ୍ତି ଅଳଙ୍କାର । ପ୍ରତିପକ୍ଷ ଉତ୍ତରରେ କହିବେ, ଏହା ନାମରେ ହିଁ ପ୍ରମାଣିତ । —ଅଳଙ୍କାର ଛଡ଼ା ମଧ୍ୟ କାବ୍ୟ ହୁଏ । କାରଣ, ଯେଉଁଠି କ୍ରିୟା ଓ ରୂପର ଅକୃତ୍ରିମ ବର୍ଣ୍ଣନା ହିଁ କାବ୍ୟ, ନିହାତି ମତର ଆନୁଗତ୍ୟ ବିନା ସେହି ବର୍ଣ୍ଣନାକୁ ଅଳଂକାର କହିବା ଚଳେନା ।

ଅଳଙ୍କାରବାଦକୁ ଟିକଏ ବଦଳାଇ ନେଇ ଆଉ କେତେକ ଆଳଂକାରିକ କୁହନ୍ତି, ଅଳଂକୃତ ବାକ୍ୟ ମାତ୍ରେ ହିଁ ଯେ କାବ୍ୟ ନୁହେଁ, ଆଉ ନିରଳଂକାର ବାକ୍ୟ ମଧ୍ୟ କାବ୍ୟ ହୋଇପାରେ, ତାହାର କାରଣ, କାବ୍ୟର ଆତ୍ମା ହେଉଛି 'ରୀତି' । 'ରୀତିରାତ୍ମା କାବ୍ୟସ୍ୟ (୨) । 'ରୀତି' ହେଲା ପଦରଚନାର ବିଶିଷ୍ଟ ଭଙ୍ଗି । 'ବିଶିଷ୍ଟପଦରଚନା ରୀତି' (୩) ଅର୍ଥାତ୍ କାବ୍ୟର ଆତ୍ମା ହେଲା ଷ୍ଟାଇଲ । ଷ୍ଟାଇଲର ଗୁଣରେ ହିଁ ବାକ୍ୟ ବା ସନ୍ଦର୍ଭ କାବ୍ୟ ହୁଏ, ଆଉ ତା ଅଭାବରୁ ବକ୍ତବ୍ୟ ସମ୍ପଦ ରହିଥିଲେ ମଧ୍ୟ ଅନ୍ୟ ବାକ୍ୟ କାବ୍ୟ ହୁଏନାହିଁ । ସ୍ୱୀକାର କରିବାକୁ ହେବ, ପୃଥିବୀର

୨ । ବାମନ, ୨/୬
୩ । ବାମନ, ୨/୭

ଅନେକ କବିଙ୍କର କାବ୍ୟ ଏହି ଗୁଣରେ ହିଁ ଲୋକରଞ୍ଜକ ହୋଇଛି ।
ଭାରତଚନ୍ଦ୍ରଙ୍କର ପ୍ରଧାନ ଆକର୍ଷଣ ତାଙ୍କ ଷ୍ଟାଇଲ୍ । ଇଉରୋପର ଅନେକ
ଆଧୁନିକ ପଦ୍ୟ ଓ ଗଦ୍ୟ ଲେଖକ ଏଇ ଷ୍ଟାଇଲ୍‌ର ଗୁଣଦ୍ୱାରା ବା ନବୀନତ୍ୱରେ
କଳାକାର ବା କବି ନାମ ପାଇଛନ୍ତି । ଅଳଙ୍କାର ହେଉଛି ଏହି ଷ୍ଟାଇଲ୍
ବା ରୀତିର ଆନୁଷଙ୍ଗିକ ବସ୍ତୁ । ଅଙ୍ଗରେ ଅଳଂକାର ପିନ୍ଧିଲେ ମନୁଷ୍ୟ
ସୁନ୍ଦର ଦେଖାଯାଏନା, ଯଦି ତାହାର ଅବୟବ ସଂସ୍ଥାନ ନିର୍ଦ୍ଦୋଷ
ନଥାଏ । ଷ୍ଟାଇଲ୍ ହେଉଛି କାବ୍ୟର ସେହି ଅବୟବ ସଂସ୍ଥାନ ।

ରୀତିବାଦର ଦୋଷ ଦେଖାଇ ପ୍ରତିପକ୍ଷ ଆଳଂକାରିକମାନେ କହନ୍ତି,
ନିର୍ଦ୍ଦୋଷ ଅବୟବରେ ଭୂଷଣ ଯୋଗ କରିଲେ ହିଁ ସୌନ୍ଦର୍ଯ୍ୟ ପ୍ରତୀତ
ହୁଏନାହିଁ, ତାହା ଶରୀରରେ ନୁହେଁ କି କାବ୍ୟରେ ମଧ୍ୟ ନୁହେଁ ।

ପ୍ରତୀୟମାନଂ ପୁନରନ୍ୟଦେବ ବସ୍ତ୍ୱସ୍ତି ବାଣୀଷୁ ମହାକବୀନାମ୍
ଯତ୍ତତ୍ପ୍ରସିଦ୍ଧାବୟବାତିରିକ୍ତଂ ବିଭାତି ଲାବଣ୍ୟମିବାଙ୍ଗନାସୁ । (୪)

ରମଣୀ ଦେହର ଲାବଣ୍ୟ ଯେପରି ଅବୟବ ସଂସ୍ଥାନ-ଅତିରିକ୍ତ
ଅନ୍ୟ କିଛି, ସେହିପରି ମହାକବିମାନଙ୍କର ବାଣୀରେ ଏପରି ବସ୍ତୁ ଅଛି
ଯାହା ଶବ୍ଦ, ଅର୍ଥ, ରଚନାଭଙ୍ଗି, ଏ ସବୁର ଅତିରିକ୍ତ ଆହୁରି ଅନେକ ।
ଏହି ଅତିରିକ୍ତ ବସ୍ତୁ ହିଁ କାବ୍ୟର ଆତ୍ମା ।

ଏ ବସ୍ତୁ କ'ଣ ? ଉତ୍ତରରେ ବସ୍ତୁବାଦୀ ଆଳଂକାରିକମାନେ କହନ୍ତି,
ଏହି ଜିନିଷଟି ହେଉଛି କାବ୍ୟର ବକ୍ତବ୍ୟ ବା ବାଚ୍ୟ । 'ତରଙ୍ଗ
ନିକରୋନ୍ନୀତ' ଇତ୍ୟାଦି ଯେ କାବ୍ୟ ନୁହେଁ ତାହାର କାରଣ, ଏହାର
ବାଚ୍ୟ କିଛି ନାହିଁ, ବକ୍ତବ୍ୟ ବିଷୟ ଅକିଞ୍ଚିତ୍କର । ଅନ୍ୟ ବାକ୍ୟ ପରି
କାବ୍ୟ ମଧ୍ୟ ପଦସମୁଚ୍ଚୟ ଦ୍ୱାରା ଶବ୍ଦ ସଙ୍ଗରେ ଶବ୍ଦ ସଜାଇ କୌଣସି ବସ୍ତୁ
ବା ଭାବକୁ ପ୍ରକାଶ କରେ । କାବ୍ୟର କାବ୍ୟତ୍ୱ ନିର୍ଭର କରେ ଏଇ ବସ୍ତୁ
ବା ଭାବର ବଶିଷ୍ଟତା ଉପରେ । ସବୁ ବସ୍ତୁ କି ସବୁ ଭାବ କାବ୍ୟର ବିଷୟ
ନୁହେଁ । ବିଶେଷ ବିଶେଷ ପ୍ରକାର ବସ୍ତୁ ଓ ବିଶେଷ ବିଶେଷ ରକମର
ଭାବକୁ ପ୍ରକାଶ କରିଲେ ହିଁ ବାକ୍ୟ କାବ୍ୟ ହୁଏ । ଯେପରି ଭାବ ଓ ବସ୍ତୁର
ମନୋହାରିତ୍ୱ, ଚମତ୍କାରିତ୍ୱ ବା ଅଭିନବତ୍ୱ ବାକ୍ୟକୁ କାବ୍ୟ

---

୪ । ଧ୍ୱନ୍ୟାଲୋକ, ୧/୪

କରିଥାଏ । ଅନେକ ବସ୍ତୁ ଅଛି, ଯାହା ସ୍ୱଭାବତଃ ମନୋହାରୀ— "ଚନ୍ଦ୍ରଚନ୍ଦନ କୋକିଳାଳାପଭ୍ରମରଝଙ୍କାରାଦୟଃ" । ଅନେକ ଭାବ ଯେପରି—ପ୍ରେମ, କରୁଣା, ଶୌର୍ଯ୍ୟ, ମହତ୍ତ୍ୱ, ମନକୁ ସହଜେ ଆକୃଷ୍ଟ କରେ । କବିମାନେ ଏଇସବୁ ବିଶିଷ୍ଟ ଭାବ ଓ ବସ୍ତୁକୁ କାବ୍ୟରେ ପ୍ରକାଶ କରନ୍ତି ଏବଂ ସେମାନଙ୍କର ବିଶିଷ୍ଟ ପଦରଚନା ଭଙ୍ଗି, ଶବ୍ଦ ଓ ଅର୍ଥରେ ଯଥୋଚିତ ଅଳଂକାରମାନଙ୍କର ସମାବେଶ, ସେମାନଙ୍କର ବାଚ୍ୟ ଭାବ ଓ ବସ୍ତୁକୁ ଅଧିକତର ମନୋଜ୍ଞ କରି ତୋଳେ । ଭାବ, ବସ୍ତୁ, ରୀତି ଓ ଅଳଂକାର, ଏମାନଙ୍କର ଯଥାଯଥ ସମବାୟରେ ହିଁ କାବ୍ୟର ସୃଷ୍ଟି । ଏ ସମସ୍ତଠାରୁ ଅତିରିକ୍ତ କାବ୍ୟର ଆତ୍ମା କହିଲେ ଆଉ କିଛି ଧର୍ମାନ୍ତର ବିଷୟ ନାହିଁ । ଯେପରି ବାର୍ହସ୍ପତ୍ୟ ପ୍ରଭୃତି କହିଛନ୍ତି—ରକ୍ତ, ମାଂସ, ମଜ୍ଜା ଇତ୍ୟାଦି ଉପାଦାନର ସମ୍ମିଶ୍ରଣରେ ମନୁଷ୍ୟ ଦେହରେ ଚେତନାର ଆବିର୍ଭାବ ହୁଏ, ମନ ନାମରେ କୌଣସି ସ୍ୱତନ୍ତ୍ର ବସ୍ତୁ ନାହିଁ ।

ଯେଉଁସବୁ ଆଳଂକାରିକ ବସ୍ତୁବାଦୀମାନଙ୍କ ସହ ଏକମତ ନୁହନ୍ତି ସେମାନଙ୍କୁ ମଧ୍ୟ ସ୍ୱୀକାର କରିବାକୁ ହୋଇଛି, ଅଧିକାଂଶ କବିଙ୍କ କାବ୍ୟରେ ଏହି ଭାବ, ବସ୍ତୁ, ରୀତି ଓ ଅଳଂକାର ଗୁଣ ହିଁ ଅଛି । ଏପରିକି ମହାକବିମାନଙ୍କର କାବ୍ୟ-ପ୍ରବନ୍ଧର ଅନେକାଂଶ ଏହାଛଡ଼ା ଅନ୍ୟ କିଛି ନୁହେଁ । ତେବେ ସେମାନଙ୍କର ଭାବ ଓ ବସ୍ତୁର ଚମତ୍କାରିତ୍ୱ ହୁଏତ ବେଶୀ, ସେମାନଙ୍କର ରଚନା ଓ ପ୍ରକାଶଭଙ୍ଗି ଆହୁରି ବିଚିତ୍ର, ସେମାନଙ୍କର ଅଳଂକାର ଅଧିକତର ସଙ୍ଗତ ଓ ଶୋଭନ । ତଥାପି ଏହି ଆଳଂକାରିକମାନେ କାବ୍ୟବିଚାର ବେଳେ ଏଇଠି ଚୁପ୍ ରହିପାରି ନାହାନ୍ତି, ତାହାର କାରଣ ସେମାନେ ଦେଖିଛନ୍ତି ଯେ, ଯାହା ଶ୍ରେଷ୍ଠ କାବ୍ୟ ତା'ର ପ୍ରକୃତି ହିଁ ହେଉଛି ବାଚ୍ୟକୁ ଛାଡ଼ିଯିବା । ଶବ୍ଦାର୍ଥ ମାତ୍ରେ ଯାହାକିଛି ପ୍ରକାଶ ହୁଏ, ସେହି କଥାବସ୍ତୁ କାବ୍ୟର ପ୍ରଧାନ କଥା ନୁହେଁ । ତାହା ଯଦି ହୋଇଥାନ୍ତା, ତେବେ ଯାହାର ଶବ୍ଦାର୍ଥର ଜ୍ଞାନ ଅଛି, ସେ ହିଁ କାବ୍ୟ ଆସ୍ୱାଦନ କରନ୍ତେ, କିନ୍ତୁ ତାହା ହୁଏନାହିଁ ।

ଶବ୍ଦାର୍ଥଶାସନଜ୍ଞାନମାତ୍ରେଣୈବ ନ ବେଦ୍ୟତେ
ବେଦ୍ୟତେ ସହି କାବ୍ୟାର୍ଥତତ୍ତ୍ୱଜ୍ଞୈରେବ କେବଳମ୍ । (୫)

---

୫ । ଧ୍ୱନ୍ୟାଲୋକ ୧/୭

କାବ୍ୟର ଯାହା ସାର ଅର୍ଥ, କେବଳ ଶବ୍ଦାର୍ଥର ଜ୍ଞାନରେ ତାହା ଜଣାଯାଏନା, ଏକମାତ୍ର କାବ୍ୟାର୍ଥତତ୍ତ୍ୱଜ୍ଞମାନେ ହିଁ ସେହି ଅର୍ଥ ଜାଣିପାରନ୍ତି ।

"ଯଦି ଚ ବାଚ୍ୟରୂପ ଏବାସାବର୍ଥ ସ୍ୟାତ୍ ତଦ୍ୱାଚ୍ୟ-ବାଚକ ସ୍ୱରୂପପରିଜ୍ଞାନାଦେବ ତତ୍ପ୍ରତୀତିଃ ସ୍ୟାତ୍ ।"

କାବ୍ୟାର୍ଥ ଯଦି କେବଳ ବାଚ୍ୟରୂପ ହୋଇଥାନ୍ତା, ତେବେ ବାଚ୍ୟ-ବାଚକର ସ୍ୱରୂପ ଜ୍ଞାନରେ ହିଁ ବାକ୍ୟାର୍ଥର ପ୍ରତୀତ ହୁଅନ୍ତା ।

"ଅଥଚ ବାଚ୍ୟବାଚକରୂପଲକ୍ଷଣକୃତଶ୍ରମାଣାଂ କାବ୍ୟତତ୍ତ୍ୱାର୍ଥ
—ଭାବନାବିମୁଖାନାଂ ସ୍ୱର ଶ୍ରୁତ୍ୟାଦି ଲକ୍ଷଣମିବ ପ୍ରଗୀତାନାଂ
ଗାନ୍ଧର୍ବ ଲକ୍ଷଣ

—ବିଦାମଗୋଚର ଏବାସାବର୍ଥଃ ।" (୬)

ଅଥଚ ଦେଖାଯାଏ, କେବଳ ବାଚ୍ୟବାଚକ ଲକ୍ଷଣର ଜ୍ଞାନଲାଭରେ ହିଁ ଯେଉଁମାନେ ଶ୍ରମ କରିଛନ୍ତି, କିନ୍ତୁ ବାଚ୍ୟାତିରିକ୍ତ କାବ୍ୟତତ୍ତ୍ୱର ଆସ୍ୱାଦନ ବିମୁଖ, ପ୍ରକୃତ କାବ୍ୟାର୍ଥ ସେମାନଙ୍କର ଅଗୋଚର ଥାଏ, ଯେପରି ଗାନର ଲକ୍ଷଣ ମାତ୍ର ଯେଉଁମାନେ ଜାଣନ୍ତି ସେମାନଙ୍କୁ ସଙ୍ଗୀତର ସ୍ୱର ଓ ଶ୍ରୁତି ଅନୁଭୂତ ହୁଏନାହିଁ । ଅର୍ଥାତ୍ ଶ୍ରେଷ୍ଠ କାବ୍ୟ ନିଜର ବାଚ୍ୟାର୍ଥରେ ହିଁ ପରିସମାପ୍ତ ନହୋଇ ବିଷୟାନ୍ତରର ବ୍ୟଞ୍ଜନା କରେ । ଆଲଂକାରିକ-ମାନେ କାବ୍ୟର ଏହି ବାଚ୍ୟାତିରିକ୍ତ ଧର୍ମାନ୍ତରର ଅଭିବ୍ୟଞ୍ଜନାର ନାମ ଦେଇଛନ୍ତି 'ଧ୍ୱନି' ।

"ଯତ୍ରାର୍ଥଃ ଶବ୍ଦୋ ବା ତମର୍ଥମୁପସର୍ଜନୀକୃତସ୍ୱାର୍ଥୌ ।
ବ୍ୟଙ୍ଗ୍ୟଃ କାବ୍ୟବିଶେଷଃ ସ ଧ୍ୱନିରିତି ସୂରିଭିଃ କଥିତଃ ।" (୭)

ଯେଉଁଠାରେ, କାବ୍ୟର ଅର୍ଥ ଓ ଶବ୍ଦ ନିଜର ପ୍ରାଧାନ୍ୟ ପରିତ୍ୟାଗ କରି ବ୍ୟଞ୍ଜିତ ଅର୍ଥକୁ ପ୍ରକାଶ କରେ, ପଣ୍ଡିତମାନେ ତାକୁ ହିଁ 'ଧ୍ୱନି' କହନ୍ତି । ଏଇ ବ୍ୟଞ୍ଜିତ ଅର୍ଥର ଆଳଙ୍କାରିକ ପରିଭାଷା ହେଲା ବ୍ୟଙ୍ଗ୍ୟ ବା ବ୍ୟଙ୍ଗ୍ୟାର୍ଥ । ଧ୍ୱନିବାଦୀମାନେ କହନ୍ତି, ଏଇ 'ଧ୍ୱନି' ବା 'ବ୍ୟଙ୍ଗ୍ୟ' ହେଉଛି କାବ୍ୟର ଆତ୍ମା, ତା'ର ସାରତମ ବସ୍ତୁ ।

---

୬ । ଧ୍ୱନ୍ୟାଲୋକ, ୧/୭ ବୃତ୍ତି
୭ । ଧ୍ୱନ୍ୟାଲୋକ, ୧/୧୩

କିନ୍ତୁ ଆରମ୍ଭରୁ ହିଁ ସେମାନେ ସାବଧାନ କରିଛନ୍ତି ଯେ, କାବ୍ୟର 'ଧ୍ୱନି', ଉପମା ଓ ଅନୁପ୍ରାସ ପ୍ରଭୃତି ଯେଉଁ ସବୁ ଅଳଂକାର ତାହାର ବାଚ୍ୟବାଚକର—ଅର୍ଥ ଓ ଶବ୍ଦର ଚାରୁତ୍ୱ ସମ୍ପାଦନ କରେ, ତାହା ପୃଥକ୍ ଜିନିଷ ।

'ବାଚ୍ୟବାଚକଚାରୁତ୍ୱହେତୁଭ୍ୟ ଉପମାଦିଭ୍ୟୋଽନୁପ୍ରାସାଦିଭ୍ୟଶ୍ଚ
ବିଭକ୍ତ ଏବ । (୮)

କାରଣ, ଶ୍ରେଷ୍ଠ କବିମାନେ ଏପରି କୌଶଳରେ ଏହି ଅଳଂକାର ସବୁ ପ୍ରୟୋଗ କରନ୍ତି ଯାହାକି ଆପାତ ଦୃଷ୍ଟିରେ ମନେହୁଏ, ଏଇ ଅଳଂକାରବୋଧ କବିତାକୁ ବାଚ୍ୟାର୍ଥରୁ ଛଡ଼ାଇ ଧ୍ୱନି ଆଡ଼କୁ ନେଇଗଲା, କିନ୍ତୁ କାବ୍ୟରସିକମାନେ ଜାଣନ୍ତି, ଶ୍ରେଷ୍ଠ କାବ୍ୟର ଆତ୍ମା ଯେ 'ଧ୍ୱନି', ତାହା ସେଠାରେ ନାହିଁ । କାରଣ ସେହିଠାରେ ଯାହା ପ୍ରଧାନ ଧ୍ୱନିର ଆଭାସ ଟିକିଏ ଅଛି, ତାହା ବାଚ୍ୟାର୍ଥ ଅନୁଯାୟୀ ଅଛି ମାତ୍ର । କିନ୍ତୁ ଶ୍ରେଷ୍ଠ କାବ୍ୟର 'ଧ୍ୱନି' ହିଁ ପ୍ରଧାନ ବସ୍ତୁ ।

ବ୍ୟଙ୍ଗ୍ୟସ୍ୟ ଯତ୍ରାପ୍ରାଧାନ୍ୟଂ ବାଚ୍ୟ ମାତ୍ରାନୁଯାୟିନଃ
ସମାସୋକ୍ତ୍ୟାଦୟସ୍ତତ୍ର ବାଚ୍ୟାଲଂକୃତୟଃ ସ୍ଫୁଟାଃ ॥
ବ୍ୟଙ୍ଗ୍ୟସ୍ୟ ପ୍ରତିଭା ମାତ୍ରେ ବାଚ୍ୟାର୍ଥାନୁଗମେ ପିବା ।
ନ ଧ୍ୱନିର୍ଯତ୍ର ବା ତସ୍ୟ ପ୍ରାଧାନ୍ୟଂ ନ ପ୍ରତୀୟତେ ।
ତତ୍ପରାବେବ ଶବ୍ଦାର୍ଥୌ ଯତ୍ର ବ୍ୟଙ୍ଗ୍ୟଂ ପ୍ରତିସ୍ଥିତୌ
ଧ୍ୱନେଃ ସ ଏବ ବିଷୟୋ ମନ୍ତବ୍ୟଃ ସଙ୍କରୋ ଝିତଃ । (୯)

ବ୍ୟଙ୍ଗ୍ୟ ଯେଉଁଠି ଅପ୍ରଧାନ ଏବଂ ବାଚ୍ୟାର୍ଥର ଅନୁଗାମୀ ମାତ୍ର, ଯେପରିକି ସମାସୋକ୍ତିରେ, ସେଇଠି ତାହା ସ୍ପଷ୍ଟ କେବଳ ବାଚ୍ୟାଲଂକାର, ଧ୍ୱନି ନୁହେଁ । ବ୍ୟଙ୍ଗ୍ୟର ଆଭାସମାତ୍ର ରହିଲେ ଅଥବା ବାଚ୍ୟାର୍ଥର ଅନୁଗାମୀ ହେଲେ ତାହାକୁ ଧ୍ୱନି ବୋଲିଯାଏ ନାହିଁ, କାରଣ ଧ୍ୱନିର ପ୍ରାଧାନ୍ୟ ସେଠାରେ ପ୍ରତୀୟମାନ ନୁହେଁ । ସେଠାରେ ଶବ୍ଦ ଓ ଅର୍ଥ

---

୮ । ଧ୍ୱନ୍ୟାଲୋକ, ୧/୧୩ ବୃତ୍ତି

୯ । ଧ୍ୱନ୍ୟାଲୋକ, ୧/୧୪, ୧୫, ୧୬

ବ୍ୟଙ୍ଗ୍ୟ ଭାବେ ପ୍ରତିଷ୍ଠିତ ହୋଇଥାଏ । ତାହା ହିଁ ହେଉଛି ଧ୍ୱନିର ବିଷୟ । ସୁତରାଂ ସଙ୍କରାଳଙ୍କାର ଓ ଧ୍ୱନି ଏକ ନୁହେଁ ।

ଏହିଠାରେ ଯେଉଁ ଦୁଇଟି ଅଳଙ୍କାରର ବିଶେଷକରି ନାମୋଲ୍ଲେଖ ହୋଇଛି ତାହା ମଧ୍ୟରେ ସମାସୋକ୍ତି ଅଳଙ୍କାରରେ ବର୍ଣ୍ଣିତ ବସ୍ତୁରେ ଅନ୍ୟ ବସ୍ତୁର ବ୍ୟବହାର ଆରୋପକରି ବର୍ଣ୍ଣନା କରାହୁଏ । କିନ୍ତୁ, ଏହା ଭିନ୍ନ ବସ୍ତୁ ବା ତା'ର ବ୍ୟବହାରର ସ୍ୱତନ୍ତ୍ର ଉଲ୍ଲେଖ ନଥାଏ, ବର୍ଣ୍ଣିତ ବସ୍ତୁର କାର୍ଯ୍ୟ ବର୍ଣ୍ଣନା ବା ବିଶେଷତା ମଧ୍ୟରେ ଏହି ଇଙ୍ଗିତ ଥାଏ, ଯାହା ସେମାନଙ୍କୁ ସୂଚିତ କରାଏ । ଏଠି ଶବ୍ଦର ପ୍ରୟୋଗ ଖୁବ୍ ସଂକ୍ଷେପ ହୁଏ ବୋଲି, ଏହାର ନାମ ସମାସୋକ୍ତି । ଆନନ୍ଦବର୍ଦ୍ଧନ ଏକ ବିଶିଷ୍ଟ ଉଦାହରଣ ଦେଇଛନ୍ତି—

ଉପୋଢରାଗେଣ ବିଲୋଲତାରକଂ ତଥା ଗୃହୀତଂ ଶଶିନା ନିଶାମୁଖମ୍
ଯଥା ସମସ୍ତଂ ତିମିରାଂଶୁକଂ ତୟା ପୁରୋଽପି ରାଗାଦ୍‌ଗଳିତଂ
ନ ଲକ୍ଷିତମ୍ ॥

ଉପଗତ ସନ୍ଧ୍ୟାରାଗରେ ଆକାଶରେ ଯେତେବେଳେ ତାରକା ଅସ୍ଥିର ଦର୍ଶନ, ସେହି ନିଶାପ୍ରାରମ୍ଭରେ ଯେପରି ଚନ୍ଦ୍ରୋଦୟ ହେଲା, ସେହିପରି ପୂର୍ବଦିଗର ସମସ୍ତ ତିମିର ଯବନିକା କେତେବେଳେ ଯେ ରଶ୍ମିରାଗରେ ଅପସୃତ ହେଲା ତାହା ଲକ୍ଷିତ ହେଲା ନାହିଁ । ଏହିଠାରେ ରାତ୍ରି ଓ ଚନ୍ଦ୍ର, ନାୟିକା ଓ ନାୟକର ବ୍ୟବହାର ଆରୋପ କରି ବର୍ଣ୍ଣନା କରାହୋଇଛି, ଏବଂ ରଚନାରେ ଶିଳ୍ପକୌଶଳର ଚାତୁର୍ଯ୍ୟ ଯଥେଷ୍ଟ । ତାହାର ପ୍ରତି ଶବ୍ଦ ଶ୍ଳିଷ୍ଟ, ରାତ୍ରି ଓ ଚନ୍ଦ୍ରର କଥା କହୁଛି, ଏବଂ ନାୟିକା ଓ ନାୟକଙ୍କର ବ୍ୟବହାର ମଧ୍ୟ ଇଙ୍ଗିତ କରୁଛି, "ଉପୋଢ଼ରାଗେଣ ବିଲୋଲତାରକଂ" ସନ୍ଧ୍ୟାର ଅରୁଣିମାରେ ଆକାଶର ତାରାପଂକ୍ତି ଅସ୍ଥିରଦର୍ଶନ, ଆଉ ଉପଚିତ ଅନୁରାଗରେ ଚଞ୍ଚଳ ଚକ୍ଷୁତାରକା । ଗୃହୀତଂ ଶଶିନା ନିଶାମୁଖମ୍—ଚନ୍ଦ୍ରୋଦୟର ଆଭାସିତ ରାତ୍ରିର ପ୍ରାରମ୍ଭ ଆଉ ମୁଖ ଅର୍ଥରେ ବଦନ, ଗୃହୀତ ମାନେ ଧୃତ, ପରିଚୁମ୍ବିତ । ସମସ୍ତଂ ତିମିରାଂଶୁକଂ—ଏହାର ଇଙ୍ଗିତ ଖୁବ୍ ସ୍ପଷ୍ଟ, କିନ୍ତୁ ଟିକିଏ ଜଟିଳ ହୋଇଛି । ଅଂଶୁକ ମାନେ କେବଳ ବସ୍ତ୍ର ନୁହେଁ ସୂତାବସ୍ତ୍ର । ଯାହା ନାୟକୋଚିତ ଏବଂ ସନ୍ଧ୍ୟାର ଅନ୍ଧକାର ବି ଗାଢ଼ ନୁହେଁ—ପାତଳା

ଅନ୍ଧକାର, ପୁରଃ—ଅର୍ଥ ପୂର୍ବଦିଗ, ଆହୁରି ସନ୍ଧ୍ୟାରେ । ଘାଗାଦ୍‌ଗଳିତଂ—ଆଲୋକ ରାଗରେ ଅପସୃତ । ଆଉ ମ ଅନୁରାଗର ଆବେଗରେ ସ୍ଖଳିତ । ନ ଲକ୍ଷିତଂ—ରାତ୍ରିର ପ୍ରାରମ୍ଭ ଲକ୍ଷିତ ହେଲା ନାହିଁ ଏବଂ ଅନୁରାଗ ଆବେଗରେ ଅଙ୍କ୍ଷ୍ଣ୍ଟରେ ମାଳାଂଶୁକ ସ୍ଖଳିତ ହେଲା । କିନ୍ତୁ ଏସବୁ ସତ୍ତ୍ୱେ ଆନନ୍ଦବର୍ଦ୍ଧନ କହନ୍ତନ୍ତି—ଏଠାରେ ଧ୍ୱନି ନାହିଁ, କାରଣ ଏଠାରେ ବାଚ୍ୟ ହିଁ ପ୍ରଧାନ, ବ୍ୟଙ୍ଗ୍ୟାର୍ଥ ତାହାର ଅନୁଗାମୀ ମାତ୍ର ।—ଇତ୍ୟାଦୌ ବ୍ୟଙ୍ଗ୍ୟେନାନୁଗତଂ ବାଚ୍ୟମେବପ୍ରାଧାନ୍ୟେନ ପ୍ରତୀୟତେ । ରାତ୍ରି ଏବଂ ଚନ୍ଦ୍ରରେ ନାୟିକା ନାୟକର ବ୍ୟବହାର ସମାରୋପିତ ହୋଇଛି, ଏହି ବାକ୍ୟାର୍ଥ ଗୁଡ଼ିକ ଏ କବିତା ଆଉ ବେଶୀ ଦୂର ଯାଇନି ।—ସମାରୋପିତ-ନାୟିକା ନାୟକ ବ୍ୟବହାରୟୋର୍ନିଶାଶଶିନୋରେବ ବାଚ୍ୟାର୍ଥତ୍ୱାତ୍ । ନାୟକ ନାୟିକା ବ୍ୟବହାରରେ ଯେ ବ୍ୟଞ୍ଜନା, ତାହା ବାଚ୍ୟାର୍ଥର ହିଁ ବୈଚିତ୍ର୍ୟ ସମ୍ପାଦନ ମାତ୍ର ।

ଦ୍ୱିତୀୟ ଅଳଙ୍କାରଟି ହେଉଛି ସଂକରାଳଙ୍କାର । ତାହାର ନାମ ସଙ୍କର; କାରଣ, ଏହା ମଧ୍ୟରେ ଏକାଧିକ ଅଳଙ୍କାର ମିଶ୍ରିତ ଥାଏ । ଯେପରି ଏକ ଅଳଙ୍କାରର ପ୍ରୟୋଗ ହୁଏ, କିନ୍ତୁ ତାହା ଅନ୍ୟ ଏକ ଅଳଙ୍କାରକୁ ସୂଚିତ କରେ । ଲୋଚନକାର ଅଭିନବଗୁପ୍ତ କୁମାର-ସମ୍ଭବର ଗୋଟିଏ ବିଖ୍ୟାତ ଶ୍ଳୋକ ଉଦାହରଣ ଦେଇଛନ୍ତି—

ପ୍ରବାତନୀଲୋତ୍ପଳନିର୍ବିଶେଷମଧୀର ବିପ୍ରେକ୍ଷିତମାୟତାକ୍ଷ୍ୟା
ତୟା ଗୃହୀତଂ ନୁ ମୃଗାଙ୍ଗନାଭ୍ୟସ୍ତତୋ ଗୃହୀତଂ ନୁ ମୃଗାଙ୍ଗନାଭିଃ ।।

ବାୟୁକମ୍ପିତ ନୀଳପଦ୍ମ ପରି ହୋଇ ଆୟତଲୋଚନାର ଚଞ୍ଚଳ-ଦୃଷ୍ଟି, ତାକୁ ସେ ହରିଣୀମାନଙ୍କଠାରୁ ଗ୍ରହଣ କରିଛି ନା ହରିଣୀମାନେ ତା ନିକଟରୁ ଗ୍ରହଣ କରିଛନ୍ତି, ତାହା ସଂଶୟର କଥା । ଏଠି ବକ୍ତବ୍ୟ ହେଲା ଯୌବନାରୂଢ଼ା ପାର୍ବତୀଙ୍କର ଦୃଷ୍ଟି ହରିଣୀଦୃଷ୍ଟି ପରି ଚଞ୍ଚଳ । କିନ୍ତୁ ଏହି ଉପମାଟି ସ୍ପଷ୍ଟ ନକହି ଗୋଟିଏ ସନ୍ଦେହ ଭିତରେ ତାକୁ ପ୍ରକାଶ କରାହୋଇଛି । ଏହିପରି କବିକଳ୍ପିତ ସଂଶୟକୁ ଆଲଙ୍କାରିକମାନେ କହନ୍ତି ସନ୍ଦେହାଳଙ୍କାର । ସୁତରାଂ ଏଠି ବାଚ୍ୟ ହେଲା ସନ୍ଦେହାଳଙ୍କାର, ତାର ବ୍ୟଞ୍ଜନା ହେଉଛି ଗୋଟିଏ ଉପମା । କିନ୍ତୁ ଏ ବ୍ୟଞ୍ଜନା 'ଧ୍ୱନି' ନୁହେଁ; କାରଣ ଏ କବିତାର ଯାହା କିଛି ମାଧୁର୍ଯ୍ୟ, ତାହା ଏହି

ବ୍ୟଞ୍ଜିତ ଉପମା ମଧ୍ୟରେ ନାହିଁ, ବ୍ୟକ୍ତ ସନ୍ଦେହ ମଧ୍ୟରେ ହିଁ ରହିଛି । ଉପମାଟି ବରଂ ଏହି ସନ୍ଦେହର ଅଭ୍ୟୁତ୍ଥାନରେ ସହାୟତା କରି ତାହା ସଙ୍ଗେ ଏକାଙ୍ଗ ହୋଇ, ସନ୍ଦେହରେ ହିଁ ପର୍ଯ୍ୟବସିତ ହୋଇଛି ।

ଅତ୍ର ମୃଗାଙ୍ଗନାବଲୋକନେନ ତଦବଲୋକନସ୍ୟୋପମା ଯଦ୍ୟପି
ବ୍ୟଙ୍ଗ୍ୟା ତଥାପି

ବାଚ୍ୟସ୍ୟ ସା ସନ୍ଦେହାଲଂକାରସ୍ୟା ଭ୍ୟୁତ୍ଥାନକାରଣୀତ୍ୱେ
ନାନୁଗ୍ରାହକତ୍ୱାଦ୍‌ଗୁଣୀଭୂତା ଅନୁଗ୍ରାହ୍ୟତ୍ୱେ ତସ୍ମିଁ ସନ୍ଦେହେ
ପର୍ଯ୍ୟବସାନମ୍ । (୧୦)

ଅର୍ଥାତ୍, ଅଭିନବଗୁପ୍ତଙ୍କ ମତରେ ମହାକବିର ଏହି ବିଖ୍ୟାତ କବିତାଟି ଶ୍ରେଷ୍ଠକାବ୍ୟ ନୁହେଁ, ବର୍ଣ୍ଣନାକୌଶଳରେ ମନୋହାରୀ ମାତ୍ର ।

ସମାସୋକ୍ତି ଓ ସଙ୍କରାଲଙ୍କାରରେ ଯେ ବ୍ୟଞ୍ଜନା ଥାଏ, ସେ ବ୍ୟଞ୍ଜନା (କାବ୍ୟର ଆତ୍ମା) 'ଧ୍ୱନି' ନୁହେଁ, ଏ ବିଚାରର ଉଦ୍ଦେଶ୍ୟ ଏହା ପ୍ରମାଣ କରିବ ଯେ, ବାକ୍ୟରେ ଯେକୌଣସି ବ୍ୟଞ୍ଜନା ରହିଲେ ହିଁ ତାହା କାବ୍ୟ ହୁଏ ନାହିଁ । ବିଶ୍ୱନାଥ ଅବଶ୍ୟ ସିଧା କହିଛନ୍ତି, ତାହାହେଲେ ପ୍ରହେଳିକା ବି କାବ୍ୟ ହୁଅନ୍ତା । କିନ୍ତୁ ଏଇସବୁ ଅଳଙ୍କାର ପ୍ରଯୁକ୍ତ ହେଲେ, ସେମାନଙ୍କର କୌଶଳ ଓ ମାଧୁର୍ଯ୍ୟ ସେମାନଙ୍କର ବ୍ୟଞ୍ଜନାକୁ 'ଧ୍ୱନି' ବୋଲି ଭ୍ରମ ଜନ୍ମାଇପାରେ । ଏଣୁ ଏମାନଙ୍କ ସମ୍ବନ୍ଧରେ ବିଶେଷକରି ସାବଧାନ କରାଇଦେବା ପ୍ରୟୋଜନ । ସମାସୋକ୍ତିରେ ଯେଉଁ ବ୍ୟଞ୍ଜନା, ତାହା ହେଉଛି ଏକ ବସ୍ତୁର ବର୍ଣ୍ଣନା ଦେଇ ଅନ୍ୟ ବସ୍ତୁର ବ୍ୟଞ୍ଜନା । ସଂକରାଲଙ୍କାରର ବ୍ୟଞ୍ଜନା ଏକ ଅଳଙ୍କାର ଦେଇ ଅନ୍ୟ ଅଳଙ୍କାରର ବ୍ୟଞ୍ଜନା । ସୁତରାଂ ଯେଉଁଠାରେ ଶବ୍ଦାର୍ଥ କେବଳ ମାତ୍ର ବସ୍ତୁ ବା ଅଳଙ୍କାରର ବ୍ୟଞ୍ଜନା କରେ, ସେ ବ୍ୟଞ୍ଜନା ଶ୍ରେଷ୍ଠକାବ୍ୟର 'ଧ୍ୱନି' ବା ବ୍ୟଞ୍ଜନା ନୁହେଁ । ଯେଉଁ 'ଧ୍ୱନି' କାବ୍ୟର ଆତ୍ମା, ତା'ର ବ୍ୟଞ୍ଜନା କାବ୍ୟର ବାଚ୍ୟାର୍ଥକୁ ବସ୍ତୁ ଓ ଅଳଙ୍କାରର ଅଜ୍ଞାତ ଏକ ଭିନ୍ନ ଲୋକରେ ପହଞ୍ଚାଇଦିଏ ।

କାବ୍ୟ ତା'ର ବାଚ୍ୟାର୍ଥକୁ ଛାଡ଼ିଯାଏ, ମହାକବି କଥା କଥାରେ ଅଜ୍ଞାତ ଲୋକକୁ ପାଠକକୁ ନେଇଯାଏ । ଏସବୁ ଉକ୍ତି ଯେପରି ଏ କାଳର,

---

୧୦ । ଅଭିନବଗୁପ୍ତ

ଯୋହିପରି ସେହି ସମୟର ବସ୍ତୁତାନ୍ତ୍ରିକ ଲୋକଙ୍କ ନିକଟରେ ହାସ୍ୟାସ୍ପଦ ମନେହେଉଛି । ପ୍ରାଚୀନ ବସ୍ତୁତାନ୍ତ୍ରିକମାନେ କହୁଛନ୍ତି—କାବ୍ୟର ବାଚ୍ୟ ନୁହେଁ, ତା'ର ଗୁଣ ଅଳଙ୍କାର ନୁହେଁ, ଅଥଚ 'ଧ୍ୱନି' ବୋଲି ଅପୂର୍ବ ଏକ ବସ୍ତୁ, ଏ ପୁଣି କଣ ? ସେହି ଜିନିଷ ହୁଏ ତ କାବ୍ୟର ଶୋଭା, ତା'ର ଗୁଣ, ଅଳଙ୍କାର ମଧ୍ୟରେ ଅଛି ନାହିଁ ତ କିଛି ହିଁ ନାହିଁ, ଗୋଟିଏ ପ୍ରବାଦ ମାତ୍ର, ଖୁବ୍ ସମ୍ଭବ ଶବ୍ଦ ଓ ଅର୍ଥର ଅନନ୍ତ ବୈଚିତ୍ର୍ୟ ମଧ୍ୟରେ ପ୍ରସିଦ୍ଧ ଆଳଙ୍କାରିକମାନେ ବର୍ଣ୍ଣନା କରନ୍ତି ଏପରି ଗୋଟିଏ ବୈଚିତ୍ର୍ୟକୁ ଜଣେ କହୁଛନ୍ତି 'ଧ୍ୱନି' ଆଉ ଏପରି ଦଳେ ଲୋକ ଅଳୀକ ସହୃଦୟତ୍ୱ ଭାବନାରେ ମୁକୁଳିତଚକ୍ଷୁ ହୋଇ 'ଧ୍ୱନି' 'ଧ୍ୱନି' ବୋଲି ନୃତ୍ୟ ଆରମ୍ଭ କରିଛନ୍ତି—

> କିଂ ଚ ବାଗ୍‌ବିକଳ୍ପାନାମାନନ୍ତ୍ୟାତ୍ ସମ୍ଭବତ୍ୟପି ବା କସ୍ମିଂଶ୍ଚିତ୍ କାବ୍ୟଲକ୍ଷଣବିଧାୟିଭିଃ ପ୍ରସିଦ୍ଧୈରପ୍ରଦର୍ଶିତେ ପ୍ରକାରଲେଶେ ଧ୍ୱନିର୍ଧ୍ୱନିରିତି ଯଦଳୀକ ସହୃଦୟତ୍ୱ ଭାବନା ମୁକୁଳିତ ଲୋଚନୈ ନୃତ୍ୟତେ । ······ତସ୍ମାତ୍ ପ୍ରବାଦମାତ୍ରଂ ଧ୍ୱନିଃ । (୧୧)

ଧ୍ୱନିବାଦର ମୁଖ୍ୟାଚାର୍ଯ୍ୟ ଆନନ୍ଦବର୍ଦ୍ଧନ ତାଙ୍କ ଧ୍ୱନ୍ୟାଲୋକ ଗ୍ରନ୍ଥରେ ମନୋରଥ ନାମରେ ଏକ ସମସାମୟିକ କବିଙ୍କର ବାକ୍ୟ ଦେଇଛନ୍ତି, ଯାହା ନିଶ୍ଚୟ ଏ ସମୟର ବସ୍ତୁତାନ୍ତ୍ରିକମାନଙ୍କ ମନୋରଥ ପୂର୍ଣ୍ଣ କରିବ—

> ଯସ୍ମିନ୍ନସ୍ତି ନ ବସ୍ତୁ କିଞ୍ଚନ ମନଃ ପ୍ରହ୍ଲାଦି ସାଲଂକୃତି
> ବ୍ୟୁତ୍ପନ୍ନୈ ରଚିତଂ ଚ ନୈବ ବଚନୈର୍ବକ୍ରୋକ୍ତିଶୂନ୍ୟଂ ଚ ଯତ୍ ।
> କାବ୍ୟଂ ତଦ୍ ଧ୍ୱନିନା ସମନ୍ୱିତମିତି ପ୍ରୀତ୍ୟା ପ୍ରଶଂସଜଡ଼ୋ
> ନୋ ବିଦ୍ମୋ ଽଭିଦଧାତି କିଂ ସୁମତିନା ପୃଷ୍ଟଃ ସ୍ୱରୂପଂ ଧ୍ୱନେଃ ।

ଯେଉଁ କବିତାରେ ସୂକ୍ଷ୍ମମାନସ୍ୱ ମନୋରମ ବସ୍ତୁ କିଛି ନାହିଁ, ଚତୁର ବଚନବିନ୍ୟାସରେ ଯାହା ରଚିତ ନୁହେଁ ଏବଂ ଅର୍ଥ ଯାହାର ଅଳଙ୍କାରହୀନ, ଜଡ଼ବୁଦ୍ଧି ଲୋକମାନେ ଗତାନୁଗତିକର ପ୍ରୀତିରେ (ଅର୍ଥାତ୍ ଫେସନ୍‌ର ଖାତିରରେ) ତାହାକୁ ହିଁ ଧ୍ୱନିଯୁକ୍ତ କାବ୍ୟ ବୋଲି ପ୍ରଶଂସା କରନ୍ତି । କିନ୍ତୁ ବୁଦ୍ଧିମାନ ଲୋକ ନିକଟରେ 'ଧ୍ୱନି'ର ସ୍ୱରୂପ କେହି ବ୍ୟାଖ୍ୟା କରିଛି, ଏହା ଜଣାନାହିଁ ।

---

୧୧ । ଧ୍ୱନ୍ୟାଲୋକ, ୧/୧ ବୃତ୍ତି

ଏହି ସମାଲୋଚନାରେ ଧ୍ୱନିବାଦୀମାନେ ବିଚଳିତ ହୋଇନାହାନ୍ତି । ସେମାନେ ସ୍ୱୀକାର କରିଛନ୍ତି, କାବ୍ୟର 'ଧ୍ୱନି' ତାହାର ବାଚ୍ୟାର୍ଥ ପରି ଏତେ ସ୍ପଷ୍ଟ ଜିନିଷ ନୁହେଁ ଯେ, ବ୍ୟାକରଣ ଓ ଅଭିଧାନରେ ବ୍ୟୁତ୍ପତ୍ତି ରହିଲେ ହିଁ ତାହାର ପ୍ରତୀତି ହେବ । କିନ୍ତୁ ସେମାନେ କହୁଛନ୍ତି, ଯାହାର କିଛି ମାତ୍ର କାବ୍ୟବୋଧ ଅଛି, ତାହାକୁ ହିଁ ହାତରେ କଲମରେ ପ୍ରମାଣ କରି ଦେଖାଯାଏ ଯେ, କାବ୍ୟର ଆତ୍ମା ହେଉଛି 'ଧ୍ୱନି', ବାଚ୍ୟାତିରିକ୍ତ ଏକ ବିଶେଷ ବସ୍ତୁର ବ୍ୟଞ୍ଜନା । କାରଣ, ବାଚ୍ୟ ବା ବକ୍ତବ୍ୟ ଏକ ହେଲେହେଁ ଏଇ ଧ୍ୱନିର ଅଭାବରୁ ଗୋଟିଏ ବାକ୍ୟ କାବ୍ୟ ନୁହେଁ, ଆଉ 'ଧ୍ୱନି' ଅଛି ବୋଲି ଅନ୍ୟ ବାକ୍ୟ ଶ୍ରେଷ୍ଠ କାବ୍ୟ, ଏହା ସହଜରେ ଦେଖାଯାଇପାରେ । ଧ୍ୱନିବାଦୀମାନଙ୍କର ଅନୁସରଣରେ କିଛି ଉଦାହରଣ ଦିଆଯାଉ ।

ବିବାହ ପ୍ରସଙ୍ଗରେ ବରର କଥାରେ କୁମାରୀଗଣ ଲଜ୍ଜାନତମୁଖୀ ହେଲେ ମଧ୍ୟ ପୁଲକୋଦ୍‌ଗମରେ ସେମାନଙ୍କର ଅନ୍ତରର ସ୍ପୃହା ସୂଚିତ ହୁଏ—ଏହି ତଥ୍ୟଟି ନିମ୍ନ ଶ୍ଳୋକରେ କୁହାଯାଇଛି—

କୃତେ ବରକଥାଲାପେ କୁମାର୍ଯ୍ୟଃ ପୁଲକୋଦ୍‌ଗମୈଃ
ସୂଚୟନ୍ତି ସ୍ପୃହାମନ୍ତର୍ଲଜ୍ଜୟାବନତାନନାଃ ।।

କୌଣସି କାବ୍ୟରସିକ ଏ ଶ୍ଳୋକକୁ କାବ୍ୟ କହିବ ନାହିଁ । ଠିକ୍ ଏହି କଥା ହିଁ କାଳିଦାସ ପାର୍ବତୀଙ୍କ ସମ୍ବନ୍ଧେ କୁମାରସମ୍ଭବରେ କହିଛନ୍ତି, ଯେଉଁଠି ନାରଦ ମହାଦେବଙ୍କ ସଙ୍ଗରେ ବିବାହ ପ୍ରସ୍ତାବ ନେଇ ହିମାଳୟଙ୍କ ନିକଟକୁ ଆସିଛନ୍ତି—

ଏବଂବାଦିନି ଦେବର୍ଷୌ ପାର୍ଶ୍ୱେ ପିତୁରଧୋମୁଖୀ ।
ଲୀଳାକମଲ ପତ୍ରାଣି ଗଣୟାମାସ ପାର୍ବତୀ ।।

ଏହାର କାବ୍ୟତ୍ୱ ସମ୍ବନ୍ଧରେ କେହି ପ୍ରଶ୍ନ କରିବେ ନାହିଁ । କିନ୍ତୁ କାହିଁକି ? କେଉଁଠି ଏହାର କାବ୍ୟତ୍ୱ ? ଏହାର ଯାହା ବାଚ୍ୟାର୍ଥ, ତାହା ତ ପୂର୍ବ ଶ୍ଳୋକ ସହିତ ଏକ । କୌଣସି ଅଳଙ୍କାରର ସୁଷମାରେ ଏ କାବ୍ୟ ନୁହେଁ, କାରଣ କୌଣସି ଅଳଙ୍କାର ଏଥିରେ ନାହିଁ । ଧ୍ୱନିବାଦୀମାନେ କହନ୍ତି, ସ୍ପଷ୍ଟ ଦେଖାଯାଉଛି, ଏ କବିତାର ଶବ୍ଦାର୍ଥ, ଲୀଳାକମଳର

ପଦଗଣନା—ତାହାର ବାଚ୍ୟାର୍ଥ ଗୁଡ଼ିକ ଅର୍ଥାନ୍ତରରେ ପୂର୍ବଭାଗର ଲଜ୍ଜାକୁ ବ୍ୟଞ୍ଜନା କରୁଛି, ଏବଂ ସେହିଠାରେ ହିଁ ଏହାର କାବ୍ୟତ୍ୱ ।

ଅତ୍ର ହି ଲୀଳାକମଳପତ୍ରଗଣନମୁପସର୍ଜନୀ କୃତସ୍ୱରୂପଂ···ଅର୍ଥାନ୍ତରଂ ବ୍ୟଭିଚାରି ଭାବଲକ୍ଷଣଂ ପ୍ରକାଶୟତି । (୧୨)

ନାରୀଗଣ ସୌନ୍ଦର୍ଯ୍ୟର ଉପମାନ ଯେ ଜଳ ସ୍ଥଳ ଆକାଶର ସମ୍ପଦ ଖୋଜିବାପାଇଁ ହୁଏ, ଏହା ଗୋଟିଏ ଅତିସାଧାରଣ କବିପ୍ରସିଦ୍ଧି । ନିମ୍ନ ଶ୍ଳୋକରେ ସେଇ ଭାବ ହିଁ ପ୍ରକାଶ କରାହୋଇଛି ।

> ଶଶିବଦନାସିତସରସିଜନୟନା ସିତକୁନ୍ଦଦଶନପଂକ୍ତିରିୟମ୍
> ଗଗନ ଜଳସ୍ଥଳ ସମ୍ଭବହୃଦ୍ୟାକାରା କୃତା ବିଧିନା ।

ଆକାଶର ଚନ୍ଦ୍ରପରି ମୁଖ, ନୀଳପଦ୍ମପରି ଚକ୍ଷୁ, ଶୁଭ୍ରକୁନ୍ଦ ଫୁଲପରି ଦଶନପଂକ୍ତି—ଗଗନ, ଜଳ, ସ୍ଥଳ, ସମ୍ଭବ ହୃଦ୍ୟ ଯାହା କିଛି ଅଛି, ତାହାର ଆକାର ଦେଇ ବିଧାତା ତାହାକୁ ନିର୍ମାଣ କରିଛନ୍ତି । ଏହି କବିତାକୁ କାବ୍ୟ କହିବା ଠିକ୍ କି ନା ସେ ସଂଶୟ ସ୍ୱାଭାବିକ; କିନ୍ତୁ ଏହି କବିପ୍ରସିଦ୍ଧିକୁ ହିଁ ଆଶ୍ରୟ କରି କାଳିଦାସ ଯେତେବେଳେ ପ୍ରବାସୀ ଯକ୍ଷ ଦ୍ୱାରା ବୋଲାଇଛନ୍ତି;

> ଶ୍ୟାମାସ୍ୱଙ୍ଗଂ ଚକିତ ହରିଣୀପ୍ରେକ୍ଷଣେ ଦୃଷ୍ଟିପାତଂ
> ଗଣ୍ଡଚ୍ଛାୟାଂ ଶଶିନି ଶିଖିନାଂ ବର୍ହଭାରେଷୁ କେଶାନ୍ ।
> ଉତ୍ପଶ୍ୟାମି ପ୍ରତନୁଷୁ ନଦୀବୀଚିଷୁ ଭ୍ରୂବିଳାସାନ୍
> ହନ୍ତୈକସ୍ମିନ୍ କ୍ୱଚିଦପି ନ ତେ ଭୀରୁ ସାଦୃଶ୍ୟମସ୍ତି ।।

ସେତେବେଳେ ସେଥିରେ କାବ୍ୟତ୍ୱ ଆସିଲା କେଉଁଠୁ ? ଧ୍ୱନିବାଦୀମାନେ କହନ୍ତି, ଅଳଙ୍କାରଗୁଡ଼ିକ ସେମାନଙ୍କର ଅଳଙ୍କାରତ୍ୱର ସୀମା ଛାଡ଼ି ପ୍ରବାସୀର ବିରହ ବ୍ୟଥାକୁ ବ୍ୟଞ୍ଜନା କରୁଛି ବୋଲି ହିଁ ଏ କବିତା ଶ୍ରେଷ୍ଠ କାବ୍ୟ । ଏହାର ବାଚ୍ୟ କେତେକ ଉପମା କିନ୍ତୁ ଏହାର ଧ୍ୱନି ପ୍ରିୟା ବିରହର ଅନ୍ତର୍ବ୍ୟଥା ଏବଂ ସେଠାରେ ହିଁ ଏହାର କାବ୍ୟତ୍ୱ ।

ମଦନର ଦେହ ଭସ୍ମ ହୋଇଛି, କିନ୍ତୁ ତାହାର ପ୍ରଭାବ ସମସ୍ତ ବିଶ୍ୱମୟ—ଏଇ ଭାବ ନିମ୍ନ କବିତା ଦୁଇଟିରେ କୁହାଯାଇଛି ।

---

୧୨ । ଧ୍ୱନ୍ୟାଲୋକ, ୨/୨୩ ବୃତ୍ତି

ସ ଏକସ୍ତ୍ରୀଣି ଜୟତି ଜଗନ୍ତି କୁସୁମାୟୁଧଃ ।
ହରତାପି ତନୁଂ ଯସ୍ୟ ଶମ୍ଭୁନା ନ ହୃତଂବଲମ୍ ।।

ସେଇ ଏକ କୁସୁମାୟୁଧ ତିନଲୋକ ଜୟ କରେ । ଶମ୍ଭୁ ତା'ର ଦେହ ହରଣ କରିଛନ୍ତି, କିନ୍ତୁ ବଳ ହରଣ କରିପାରିନାହାନ୍ତି ।

କର୍ପୂର ଇବ ଦଗ୍ଧୋଽପି ଶକ୍ତିମାନ୍ ଯୋ ଜନେ ଜନେ ।
ନ ମୋହଃ ସ୍ତ୍ଵ ବାର୍ଯବୀର୍ଯାୟ ତସ୍ମୈ କୁସୁମଧନ୍ୱନେ ।।

ଦଗ୍ଧ ହେଲେ ମଧ କର୍ପୂର ପରି ପ୍ରତିଜଣଙ୍କୁ ତାହାର ଗୁଣ ଜଣାଅଛି, ଅବାର୍ଯବୀର୍ଯ ସେହି କୁସୁମଧନୁ ମଦନଙ୍କୁ ନମସ୍କାର । ଅଭିନବ-ଗୁପ୍ତ କହିଛନ୍ତି ( ୧/୧୩ )—ଏହି କବିତା ଦୁଇଟିରେ ବାଚ୍ୟାତିରିକ୍ତ ବ୍ୟଞ୍ଜନା ନଥିବାରୁ ଏହା କାବ୍ୟ ନୁହେଁ । ପ୍ରଥମ କବିତାଟି ଏଇ ଭାବ ମାତ୍ର ପ୍ରକାଶ କରି ଶେଷ ହୋଇଛି ଯେ, ମଦନର ଶକ୍ତିର କାରଣ ଅଚିନ୍ତ୍ୟ—'ଇୟଂ ଶୃଚିନ୍ତ୍ୟନମିରେତି ନାସ୍ୟାଂ ବ୍ୟଙ୍ଗ୍ୟସ୍ୟ ସଦ୍‌ଭାବଃ' । ଦ୍ୱିତୀୟଟି କର୍ପୂରର ସ୍ୱଭାବ ସହ ମଦନର ସ୍ୱଭାବର ତୁଳନାରେ ହିଁ ପର୍ଯ୍ୟବସିତ ହୋଇଛି—'ବସ୍ତୁତ୍ୱ ଭାବମାତ୍ରରୁ ପର୍ଯ୍ୟବସାନମିତି ତତ୍ରାପି ନ ବ୍ୟଙ୍ଗ୍ୟ-ସଦ୍‌ଭାବଶଙ୍କା' । କିନ୍ତୁ ଠିକ୍ ଏଇ କଥା ହିଁ ରବୀନ୍ଦ୍ରନାଥଙ୍କ 'ମଦନ-ଭସ୍ମେର ପରେ' କବିତାରେ କାବ୍ୟ ହୋଇଉଠିଛି—

ପଞ୍ଚଶରେ ଦଗ୍ଧ କରେ କରେଛ ଏକି ସନ୍ନ୍ୟାସୀ !
ବିଶ୍ୱମୟ ଦିୟେଛ ତାରେ ଛଡ଼ାୟେ ।
ବ୍ୟାକୁଳତର ବେଦନା ତାର ବାତାସେ ଉଠେ ନିଶ୍ୱାସି,
ଅଶ୍ରୁ ତାର ଆକାଶେ ପଡ଼େ ଗଡ଼ାୟେ ।

ଅଭିନବଗୁପ୍ତ ନିଶ୍ଚୟ କହନ୍ତେ, ତା'ର କାରଣ ଏ କବିତାର କଥା ତା'ର ବାକ୍ୟକୁ ଛାଡ଼ି, ମାନବ ମନର ଯେ ଚିରନ୍ତନ ବିରହ ଯାହା ମିଳନ ଭିତରେ ମଧ ଲୁଚିରହିଥାଏ, ତାହାର ବ୍ୟଞ୍ଜନା କରିଛି; ଏବଂ ସେହିଠାରେ ହିଁ ଏହାର କାବ୍ୟତ୍ୱ । ଅଭିନବଗୁପ୍ତ ଅବଶ୍ୟ ଠିକ୍ ଏହି ଭାଷା ବ୍ୟବହାର କରିନଥାନ୍ତେ, କିନ୍ତୁ ଏଇ ଏକା କଥା ସେ ତାଙ୍କ ଆଲଂକାରିକ ଭାଷାରେ କହିଥାନ୍ତେ ଯେ, ଏହି କବିତାର କାବ୍ୟତ୍ୱ ହେଉଛି ଏହାର କରୁଣ ବିପ୍ରଲମ୍ଭର ଧ୍ୱନି ।

ଏହି ତିନୋଟି ଉଦାହରଣରେ ଯାହା ଦେଖାଗଲା, କାବ୍ୟର ଆତ୍ମା ହେଉଛି, ତାହାର ବାଚ୍ୟ ନୁହେଁ 'ବ୍ୟଞ୍ଜନା', କଥା ନୁହେଁ 'ଧ୍ୱନି'— ଏହି ବ୍ୟଞ୍ଜନା କାହାର ବ୍ୟଞ୍ଜନା, ଏହି ଧ୍ୱନି କାହାର ଧ୍ୱନି ? ଧ୍ୱନିବାଦି-ମାନଙ୍କ ଉତ୍ତର—'ରସ'ର । ସେମାନେ ଦେଖାଇଛନ୍ତି, ବାକ୍ୟ ଯଦି ମାତ୍ର କେବଳ ବସ୍ତୁ ବା ଅଳଙ୍କାରର ବ୍ୟଞ୍ଜନା କରେ, ତେବେ ତାହା କାବ୍ୟ ହୁଏନାହିଁ । ରସର ବ୍ୟଞ୍ଜନା ହିଁ ବାକ୍ୟକୁ କାବ୍ୟ କରିଥାଏ । କାବ୍ୟର 'ଧ୍ୱନି' ହେଉଛି ରସର ଧ୍ୱନି । ତିନୋଟି ଉଦାହରଣରେ ହିଁ କବିତାର ବାଚ୍ୟ ରସର ବ୍ୟଞ୍ଜନା କରିଛି ବୋଲି ତାହା କାବ୍ୟ । ଏଇ ରସ ଯୋଗରେ ହିଁ ପରିଚିତ ସାଧାରଣ କଥା ନବୀନତ୍ୱ ଲାଭ କରି କାବ୍ୟରେ ପରିଣତ ହୋଇଛି ।

> ଦୃଷ୍ଟପୂର୍ବା ଅପିହ୍ୟର୍ଥାଃ କାବ୍ୟେ ରସପରିଗ୍ରହାତ୍ ।
> ସର୍ବେନବା ଇବାଭାନ୍ତି ମଧୁମାସ ଇବ ଦ୍ରୁମାଃ ।। (୧୩)

'ପୂର୍ବ ପରିଚିତ ଅର୍ଥ ମଧ୍ୟ ରସ ଯୋଗରେ କାବ୍ୟତ୍ୱ ଲାଭ କରେ ବସନ୍ତର ନବ କିଶଳୟଖଚିତ ବୃକ୍ଷ ପରି ନୂତନ ରୂପେ ପ୍ରତୀୟମାନ ହୁଏ । ଅର୍ଥାତ୍ କାବ୍ୟର ଆତ୍ମା 'ଧ୍ୱନି' ବୋଲି ଯେଉଁମାନେ ଆରମ୍ଭ କରିଛନ୍ତି, କାବ୍ୟର ଆତ୍ମା 'ରସ' ବୋଲି ସେମାନେ ଉପସଂହାର କରିଛନ୍ତି । 'ବାକ୍ୟଂ ରସାତ୍ମକଂ କାବ୍ୟଂ । (୧୪) କାବ୍ୟ ହେଉଛି ସେହି ବାକ୍ୟ, ରସ ଯାହାର ଆତ୍ମା ।

କୋଽହ୍ୟଂ ରସଃ ? ଏ ରସ ଜିନିଷଟି କଣ ?

ପାଠକମାନେ ଯଦି ଇତି ମଧ୍ୟରେ ନିତାନ୍ତ ବିରସ ନ ହୋଇଥାନ୍ତି, ତେବେ ପର ପ୍ରସ୍ତାବରେ ପ୍ରାଚୀନ ଆଳଙ୍କାରିକମାନଙ୍କର ରସ ବିଚାରର ପରିଚୟ ପାଇବେ । ଲେଖକଙ୍କ ମତରେ କାବ୍ୟ ସମ୍ବନ୍ଧରେ ତାହାଠାରୁ ଖାଣ୍ଟି କଥା କୌଣସି ଦେଶରେ, କୌଣସିକାଳେ, କେହି କହିନାହାନ୍ତି ।

---

୧୩ । ଧ୍ୱନ୍ୟାଲୋକ, ୪/୪

୧୪ । ସାହିତ୍ୟଦର୍ପଣ

# ରସ

ରବୀନ୍ଦ୍ରନାଥଙ୍କର 'କଙ୍କାଳ' ନାମକ ଗଳ୍ପର ଅଶରୀରୀ ନାୟିକା ତା'ର ଜୀବିତ କାଳର ଶରୀରାବଶେଷ କଙ୍କାଳଟିକୁ ନେଇ ବଡ଼ ଲଜ୍ଜାରେ ପଡ଼ିଥିଲା । ଅସ୍ଥିବିଦ୍ୟାର ଛାତ୍ରକୁ ସେ କିପରି ବୁଝାଇବ ଯେ, ଏଇ କେତୋଟି ଦୀର୍ଘ ଶୁଷ୍କ ଅସ୍ଥିଖଣ୍ଡ ଉପରେ ତା'ର ଛବିଶ ବର୍ଷର ଯୌବନ, "ଏତେ ଲାଳିତ୍ୟ, ଏତେ ଲାବଣ୍ୟ, ଯୌବନର କେତେ କଠିନ କୋମଳ ନିଟୋଳ ପରିପୂର୍ଣ୍ଣତା" ନେଇ ପ୍ରସ୍ଫୁଟିତ ହୋଇଉଠିଥିଲା ଯେ, ସେହି ଶରୀରରୁ ଯେ ଅସ୍ଥିବିଦ୍ୟା ଶିଖାଯାଇପାରେ ତାହା ଅତିବଡ଼ ଶରୀର-ବିଦ୍ୟାବିତ୍‌ର ମଧ୍ୟ ବିଶ୍ୱାସ ହେଉନଥିଲା । କାବ୍ୟର ରସାତ୍ମା ଯଦି କାବ୍ୟରସର ତତ୍ତ୍ୱାଲୋଚନା ପ୍ରତ୍ୟକ୍ଷ କରିଥାନ୍ତା, ତେବେ ତାହାକୁ ମଧ୍ୟ ଏପରି ଲଜ୍ଜା ପାଇବାକୁ ହୋଇଥାନ୍ତା । କାରଣ, କାବ୍ୟର ତତ୍ତ୍ୱ ବିଚାର କାବ୍ୟର କଙ୍କାଳ ନେଇ ହିଁ ହୋଇଥାଏ । ରସତତ୍ତ୍ୱ ରସ ନୁହେଁ ତତ୍ତ୍ୱ ମାତ୍ର । ଧର୍ମପିପାସୁ ନିକଟରେ 'ଥିଓଲଜି' ଯେଉଁ ବସ୍ତୁ, କାବ୍ୟରସିକ ନିକଟରେ କାବ୍ୟର ରସବିଚାର ମଧ୍ୟ ସେଇଭଳି ବସ୍ତୁ । ତଥାପି ଏ ବିଚାର ବୋଧଠାରୁ ମନୁଷ୍ୟର ନିଷ୍କୃତି ନାହିଁ । ଯାହା ମୁଖ୍ୟତଃ ବୁଦ୍ଧିର ବିଷୟ ନୁହେଁ, ତାହାକୁ ମଧ୍ୟ ବୁଦ୍ଧିର କବଳକୁ ଆଣି ବୁଦ୍ଧିର ଯନ୍ତ୍ରପାତି ଦେଇ ଥରେ ମାପଯୋଖ କରି ନଦେଖିଲେ, ମନୁଷ୍ୟର ମନ ତୃପ୍ତ ହୁଏନାହିଁ । ସୁତରାଂ ଧର୍ମ ସହିତ 'ଥିଓଲୋଜି' ନିଶ୍ଚୟ ରହିବ, କାବ୍ୟ ସହିତ ଅଳଙ୍କାରଶାସ୍ତ୍ର ଗଢ଼ିଉଠିବ ନିଶ୍ଚୟ । କେବଳ ସେହି ଶାସ୍ତ୍ରର ଲକ୍ଷ୍ୟ ଓ ପ୍ରକୃତି ସମ୍ବନ୍ଧରେ ଭୁଲ ଧାରଣା ଥିଲେ ହିଁ ବିପଦ ।

କାବ୍ୟର ରସ ବିଚାରର ମଣିଷକୁ କାବ୍ୟରସର ଆସ୍ୱାଦ ଦିଏ ନାହିଁ । ସେ ଆସ୍ୱାଦ ଦରଦୀ ଲୋକର ମନବେଦନା ଅନୁଭୂତିର ଜିନିଷ । ଆଳଙ୍କାରିକମାନଙ୍କର ଭାଷାରେ ସେହି ରସ ହେଉଛି 'ସହୃଦୟହୃଦୟ ସମ୍ବାଦୀ' । ତତ୍ତ୍ୱ ଦିଗରେ ଆଉ ଟିକିଏ ଆଗେଇଯାଇ ଆଳଙ୍କାରିକମାନେ

କହନ୍ତି, କାବ୍ୟରସାସ୍ୱାଦ ସହୃଦୟ ଲୋକର ମନର ବାହାରେ ରସର କୌଣସି ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ଅର୍ଥାତ୍‌, ଏଇ ଆସ୍ୱାଦ ହିଁ ହେଉଛି ରସ । ଯେତେବେଳେ 'ରସର ଆସ୍ୱାଦ' କୁହାଯାଏ ସେତେବେଳେ ରସ ଓ ସ୍ୱାଦ ମଧ୍ୟରେ ଗୋଟିଏ କାଳ୍ପନିକ ପାର୍ଥକ୍ୟକୁ ଅଙ୍ଗୀକାର କରି ଏକଥା କୁହାଯାଏ । (୧) ଯେପରି ଆମେ କଥାରେ କହୁ 'ଭାତ ରନ୍ଧା ହେଉଛି' (୨), ଯଦିଓ ରନ୍ଧିବାର ଫଳ ହିଁ ଭାତ । ସେହିପରି, ଯଦିଓ କଥାରେ କୁହାଯାଏ 'ରସର ପ୍ରତୀତି ବା ଅନୁଭୂତି', କିନ୍ତୁ ଏଇ ପ୍ରତୀତି ବା ଅନୁଭୂତି ହିଁ ହେଉଛି ରସ । ସହୃଦୟ ଲୋକର, ଅର୍ଥାତ୍ କାବ୍ୟାନୁଶୀଳନର ଅଭ୍ୟାସବଶରେ ଯାହାଙ୍କର ଦର୍ପଣ ପରି ନିର୍ମଳମନ କାବ୍ୟର ବର୍ଣ୍ଣନୀୟ ବସ୍ତୁରୁ ଯେଉଁ ତନ୍ମୟତା ପ୍ରାପ୍ତ ହୁଏ (୩), ଏପରି ଦରଦୀ ଲୋକର ସୁକାବ୍ୟଜନିତ ଚିତ୍ତର ଅନୁଭୂତିବିଶେଷର ନାମ ହିଁ 'ରସ' । ସୁତରାଂ କୁହାଯାଇପାରେ କାବ୍ୟରସର ଆଧାର କାବ୍ୟ ନୁହେଁ, କବି ମଧ୍ୟ ନୁହେଁ—ସହୃଦୟ କାବ୍ୟପାଠକର ମନ ।

'କାବ୍ୟେ ରସୟିତା ସର୍ବୋ ନ ବୋଦ୍ଧା ନ ନିୟୋଗଭାକ୍ ।'

ରସ ଯେତେବେଳେ ଏକପ୍ରକାର ମାନସିକ ଅବସ୍ଥା, ସେତେବେଳେ ସ୍ୱଭାବତଃ ତାର ପରିଚୟର ପ୍ରଥମ କଥା—କିଭଳି ମନରେ ଏ ଅବସ୍ଥାର ଉଦୟ ହୁଏ । ମନୁଷ୍ୟର ଜ୍ଞାନର ଉତ୍ପତ୍ତି ବିଶ୍ଳେଷଣ କରି କାଣ୍ଟ ଦେଖାଇଛନ୍ତି ଯେ, ସେଥିରେ ଦୁଇପ୍ରକାର ଉପାଦାନ—ମାନସିକ ଓ ବାହ୍ୟିକ । ବାହ୍ୟ ଉପାଦାନ ଇନ୍ଦ୍ରିୟର ପଥ ଦେଇ ମନରେ ପ୍ରବେଶ କରେ, କିନ୍ତୁ ତାହା ଜ୍ଞାନ ନୁହେଁ । ଜ୍ଞାନ ଯେତେବେଳେ

---

୧ । ରସଃ ସ୍ୱାଦ୍ୟତେ ଇତି କାଳ୍ପନିକଂ ଭେଦମୁରରୀକୃତ୍ୟ କର୍ମକର୍ତ୍ତରି ବା ପ୍ରୟୋଗଃ—ସାହିତ୍ୟଦର୍ପଣ ।

୨ । ଓଦନଂ ପଚତୀତିବଦ୍‌ବ୍ୟବହାରଃ ପ୍ରତୀୟମାନ ଏବ ହି ରସଃ—ଅଭିନବଗୁପ୍ତ, ୨/୪ ।

୩ । ଯେଷାଂ କାବ୍ୟାନୁଶୀଳନାଭ୍ୟାସବଶାଦ୍‌ବିଶଦୀଭୂତେ ମନୋମୁକୁରେ ବର୍ଣ୍ଣନୀୟତନ୍ମୟୀଭବନଯୋଗ୍ୟତା ତେ ହୃଦୟସମ୍ବାଦଭାଜଃ ସହୃଦୟାଃ—ଅଭିନବଗୁପ୍ତ, ୧/୧ ।

ଉଦୟ ହୁଏ, ଯେତେବେଳେ ମନର କେତେଗୁଡ଼ିଏ ତତ୍ତ୍ୱ ଏଇ ବାହ୍ୟିକ ଉପାଦାନ ସଙ୍ଗେ ମିଶି ତାହାକୁ ଏକ ବିଶେଷ ପରିଣତି ଓ ଆକାର ଦାନ କରେ । ଏଇସବୁ ତତ୍ତ୍ୱ ମନ ବାହାରୁ ପାଏ ନାହିଁ, ନିଜ ଭିତରୁ କାଢ଼ି ବାହାର ଜିନିଷ ଉପରେ ଛାପ ଦିଏ । ରୌଦ୍ର-ତାପରେ ଯେ ମୁଣ୍ଡ ଗରମ ହୁଏ, ଏଇ ଜ୍ଞାନର ବାହ୍ୟିକ ଉପାଦାନ ରୌଦ୍ର ଏବଂ ପୂର୍ବର ଥଣ୍ଡା ଓ ପରର ଗରମ ମସ୍ତିକ-ଇନ୍ଦ୍ରିୟପଥ ଦେଇ ହିଁ ମନକୁ ଆସେ, କିନ୍ତୁ ରୌଦ୍ର ଓ ମୁଣ୍ଡ ଗରମର ସମ୍ବନ୍ଧ, ଅର୍ଥାତ୍ ଏସବୁର କାର୍ଯ୍ୟକାରଣସମ୍ବନ୍ଧ ମନର ନିଜର ଦାନ । ଏହି କାର୍ଯ୍ୟକାରଣ ତତ୍ତ୍ୱର ପ୍ରୟୋଗ ହିଁ ବାହ୍ୟିକ ଉପାଦାନ ଜ୍ଞାନରେ ପରିଣତ ହୋଇଛି । କିମ୍ବା ଓଲଟା କହିବାକୁ ଗଲେ, ଏହି ବାହ୍ୟିକ ଉପାଦାନ ହିଁ ମନୋଗତ ସାଧାରଣ କାର୍ଯ୍ୟକାରଣ ତତ୍ତ୍ୱକୁ ବିଶେଷ କାର୍ଯ୍ୟକାରଣ ଜ୍ଞାନରେ ପରିଣତ କରେ । ଏବଂ ଜ୍ଞାନ ଅର୍ଥ ହିଁ ବିଶେଷ ଜ୍ଞାନ । ବାହ୍ୟିକ ଉପାଦାନ ଓ ମାନସିକ ତତ୍ତ୍ୱ—ଏହି ଦୁଇଟିର ସଂଯୋଗ ହେଲେ ଜ୍ଞାନର ଉତ୍ପତ୍ତି ହୁଏ । ଏହାର ଦ୍ୱିତୀୟଟି ଛଡ଼ା ପ୍ରଥମଟି ଅନ୍ଧ ଓ ପ୍ରଥମଟି ଛଡ଼ା ଦ୍ୱିତୀୟଟି କେବଳ ପଙ୍ଗୁ ନୁହେଁ, ଏକବାରେ ଶୂନ୍ୟ ।

ରସ ବିଶ୍ଳେଷଣରେ ଆଲଙ୍କାରିକମାନେ ମଧ୍ୟ ଏଇ ଦୁଇ ଉପାଦାନ ପାଇଛନ୍ତି—ମାନସିକ ଓ ବାହ୍ୟିକ । ରସର ମାନସିକ ଉପାଦାନ ହେଲା ମନର 'ଭାବ' ନାମକ ଚିତ୍ତବୃତ୍ତି ବା 'ଇମୋସନ୍' । ଆଉ ତାହାର ବାହ୍ୟିକ ଉପାଦାନ ଜ୍ଞାନର ବାହ୍ୟିକ ଉପାଦାନ ପରି, ବାହାରର ଲୌକିକ ଜଗତ ଠାରୁ ଆସେ ନାହିଁ, ଆସେ କବିର ସୃଷ୍ଟି କାବ୍ୟର ଜଗତ୍‌ଠାରୁ । ଆଲଙ୍କାରିକମାନେ କହନ୍ତି, କାବ୍ୟରେ ଏହି ବାହ୍ୟିକ ଉପାଦାନର କ୍ରିୟାରେ ମନର 'ଭାବ' ରୂପାନ୍ତରିତ ହୋଇ ରସରେ ପରିଣତ ହୁଏ, ସୁତରାଂ ଆଲଙ୍କାରିକମାନଙ୍କ ମତରେ ରସ ଜିନିଷଟି ଲୌକିକ ବସ୍ତୁ ନୁହେଁ । ମନର ଯେଉଁସବୁ ଭାବ ରୂପାନ୍ତରିତ ହୁଏ, ତାହା ଅବଶ୍ୟ ଲୌକିକ । ଲୌକିକ ଘରକରଣାର ଜଗତରେ ହିଁ ତାହାର ଅସ୍ତିତ୍ୱ, ଏବଂ ସେଇ ଜଗତ ସଙ୍ଗେ ତାହାର କାରବାର । କିନ୍ତୁ ଏଇ ଭାବ ବା Emotion ରସ ନୁହେଁ, ଏବଂ ମନୁଷ୍ୟର ମନରେ ଯାହା

ଏଇ ଭାବ ଜଗାଇଥାଏ ତାହାଁ ମଧ୍ୟ କାବ୍ୟ ନୁହେଁ । ଶୋକ ଗୋଟିଏ ମାନସିକ ଭାବ ବା Emotion ।

ଲୌକିକ ଜଗତରେ ବାହ୍ୟକ କାରଣରୁ ମନରେ ଶୋକ ଜାଗେ, ମନୁଷ୍ୟ ଶୋକାର୍ତ୍ତ ହୁଏ । କିନ୍ତୁ ଶୋକାର୍ତ୍ତ ଲୋକମନର 'ଶୋକ' ତାହା ନିକଟରେ 'ରସ' ନୁହେଁ, ଏବଂ ସେ ଶୋକର କାରଣଟି ବି କାବ୍ୟ ନୁହେଁ । କବି ଯେତେବେଳେ ତାର ପ୍ରତିଭାର ମାୟାବଳରେ ଏଇ ଲୌକିକ ଶୋକ ଓ ତାର ଲୌକିକ କାରଣର ଏକ ଅଲୌକିକ ତତ୍ତ୍ୱ କାବ୍ୟରେ ଫୁଟାଇ ପାରନ୍ତି, ସେତେବେଳେ ହିଁ ପାଠକ ମନରେ ରସର ଉଦୟ ହୁଏ, ଯାହାର ନାମ 'କରୁଣରସ' । ଏଇ କରୁଣରସ ଶୋକର 'Emotion' ନୁହେଁ । ଶୋକ ହେଉଛି ଦୁଃଖଦାୟକ । କିନ୍ତୁ କବିର କାବ୍ୟଦ୍ୱାରା ମନରେ ଯେଉଁ କରୁଣରସ ସଞ୍ଚାର ହୁଏ, ତାହା ନୟନରୁ ଲୋତକ ବୁହାଇଲେ ବି ମନକୁ ଅପୂର୍ବ ଆନନ୍ଦରେ ପୂର୍ଣ୍ଣ କରେ । ଏକଥା କାବ୍ୟର ଆସ୍ୱାଦ ଯାହାର ଅଛି, ସେ ଜାଣେ । ଯଦିଓ ପ୍ରମାଣ କରି ଦେଖାଇବା କଠିନ । କାରଣ—

> କରୁଣାଦାବପି ରସେ ଜାୟତେ ଯତ୍ପରଂ ସୁଖମ୍
> ସଚେତସାମନୁଭବଃ ପ୍ରମାଣ ତତ୍ର କେବଳମ୍ । ୪ (କ)

କରୁଣ ପ୍ରଭୃତି ରସଦ୍ୱାରା ମନରେ ଅପୂର୍ବ ସୁଖ ଜନ୍ମେ, ତା'ର ଏକମାତ୍ର ପ୍ରମାଣ ହୃଦୟବାନ୍ ଲୋକର ନିଜସ୍ୱ ଅନୁଭୂତି । ତେବେ ଏକଥା ମଧ୍ୟ ଆଳଂକାରିକମାନେ ମନେକରାଇ ଦେଇଛନ୍ତି ଯେ, କରୁଣରସ ଯଦି ଦୁଃଖର ହିଁ କାରଣ ହୋଇଥାନ୍ତା, ତେବେ ରାମାୟଣ ପ୍ରଭୃତି କରୁଣ ରସର କାବ୍ୟକୁ କେହି ବାରମ୍ବାର ପାଠକରୁ ନଥାନ୍ତେ ।

> କିଞ୍ଚତେଷୁ ଯଦା ଦୁଃଖଂ ନ କୋଽପି ସ୍ୟାତ୍ତଦୁନ୍ମୁଖଃ ।
> ତଥା ରାମାୟଣାଦୀନାଂ ଭବିତା ଦୁଃଖହେତୁତା ।। ୪ (ଖ)

କିନ୍ତୁ କରୁଣରସର ଆନନ୍ଦ କାବ୍ୟରସିକ ମନୁଷ୍ୟଙ୍କୁ ନିୟତ ସେହି ଦିଗକୁ ଟାଣୁଛି । Our sweetest songs are those that tell

---

୪ (କ, ଖ) । —ସାହିତ୍ୟଦର୍ପଣ

of saddest thought । ଆଲଙ୍କାରିକମାନେ କହିବେ, ଠିକ କଥା । କିନ୍ତୁ ମନେରଖିବାକୁ ହେବ, tell of saddest thought । ଯେଉଁ ବାସ୍ତବ ଘଟଣା ମନରେ ସିଧାସଳଖ sad thought ଆଣେ, ତାହା sweet ନୁହେଁ କି song ନୁହେଁ । କବି ଯେତେବେଳେ କାବ୍ୟରେ saddest thoughtର କଥା କହନ୍ତି, ସେତେବେଳେ ତାହା sweetest song ହୁଏ ।

ଭାବ ଓ ରସର, ବସ୍ତୁଜଗତ ଓ କାବ୍ୟଜଗତର, ଏଇ ଭେଦର ସୁସ୍ପଷ୍ଟ ପ୍ରକାଶ ପାଇଁ ଆଲଙ୍କାରିକମାନେ କହନ୍ତି, ରସ ଓ କାବ୍ୟର ଜଗତ୍ ଅଲୌକିକ ମାୟାର ଜଗତ୍ । ବ୍ୟାବହାରିକ ଜଗତର ଶୋକ, ହର୍ଷ ପ୍ରଭୃତିର ନାନା ଲୌକିକ କାରଣ ମନୁଷ୍ୟମନରେ ଶୋକ, ହର୍ଷ ପ୍ରଭୃତି ଲୌକିକ ଭାବର ଜନ୍ମ ଦେଇଥାଏ । ଏଥିରୁ କେଉଁଟି ସୁଖର ଓ କେଉଁଟି ଦୁଃଖମୟ । କିନ୍ତୁ ଏଇ ସକଳ ଲୌକିକ ଭାବ ଓ ସେଗୁଡ଼ିକର ଲୌକିକ କାରଣ କାବ୍ୟ ଜଗତରେ ଏକ ଅଲୌକିକ ରୂପ ପ୍ରାପ୍ତ ହୁଏ ପାଠକ ମନରେ ଏଇ ସବୁ ଲୌକିକ ଭାବର ଯେଉଁ ବୃତ୍ତି ବା ବାସନା ଅଛି, ତାହାକୁ ଏକ ଅଲୌକିକ ବସ୍ତୁ—'ରସ'ରେ ପରିଣତ କରେ । ରସର ମାନସିକ ଉପାଦାନ ଯେଉଁ 'ଭାବ' ତାହା ଦୁଃଖମୟ ହେଲେ ମଧ୍ୟ ତାହାର ପରିଣାମ ଯେ 'ରସ' ତାହା ନିତ୍ୟ ଆନନ୍ଦର ହେତୁ । କାରଣ, ଲୌକିକ ଦୁଃଖର ଅଲୌକିକ ପରିଣତି ଆନନ୍ଦମୟ ହେବା କିଛି ଆଶ୍ଚର୍ଯ୍ୟ ନୁହେଁ ।

ହେତୁତ୍ୱଂ ଶୋକହର୍ଷାଦେର୍
  ଗତେଭ୍ୟୋ ଲୋକସଂଶ୍ରୟାତ୍
ଶୋକହର୍ଷାଦୟୋ ଲୋକେ
  ଜାୟନ୍ତାଂ ନାମ ଲୌକିକାଃ ।
ଅଲୌକିକ ବିଭାବତ୍ୱଂ
  ପ୍ରାପ୍ତେଭ୍ୟଃ କାବ୍ୟ ସଂଶ୍ରୟାତ୍ ।
ସୁଖଂ ସଞ୍ଜାୟତେ ତେଭ୍ୟଃ
  ସର୍ବେଭ୍ୟୋଽପୀତି କା କ୍ଷତିଃ ॥ ୪ (ଗ)

୪ (ଗ) । ସାହିତ୍ୟଦର୍ପଣ ।

କବି ଯେ କାବ୍ୟରେ ମାୟାଜଗତ ସୃଷ୍ଟି କରନ୍ତି, ତା'ର କୌଶଳଟା କଣ ? ଏ ପ୍ରଶ୍ନର ଯଥାର୍ଥ ଉତ୍ତର ଅବଶ୍ୟ ଅସମ୍ଭବ । କାରଣ, ଏ ପ୍ରଶ୍ନ ହେଉଛି ନିଖିଳ କବି ପ୍ରତିଭାର ନିଃଶେଷ ପରିଚୟ ଦାବି କରିବା । କିନ୍ତୁ ପ୍ରତି କବିର ପ୍ରତ୍ୟେକ କାବ୍ୟର ନିର୍ମାଣ କୌଶଳ ଅନ୍ୟସବୁ କାବ୍ୟଠାରୁ ଅଳ୍ପ-ବହୁତେ ସ୍ୱତନ୍ତ୍ର । କାରଣ, ପ୍ରତ୍ୟେକ କାବ୍ୟ ଗୋଟିଏ ବିଶେଷ ସୃଷ୍ଟି, ଯନ୍ତ୍ରନିର୍ମିତ ବସ୍ତୁ ନୁହେଁ । ସୁତରାଂ କାବ୍ୟତତ୍ତ୍ୱ ସେ କୌଶଳର ଯେଉଁ ପରିଚୟ ଦେଇପାରେ, ସେଇ ପରିଚୟ ସକଳ କାବ୍ୟର ସାଧାରଣ କାବ୍ୟକୌଶଳର କଙ୍କାଳର ପରିଚୟ ମାତ୍ର । ଏହା ସମ୍ଭବ, କାରଣ ଦେହର ରୂପର ଭେଦ ସତ୍ତ୍ୱେ କଙ୍କାଳର ରୂପ ପ୍ରାୟ ଏକ ।

ଆଲଙ୍କାରିକମାନେ କହନ୍ତି, କାବ୍ୟନିର୍ମାଣ କୌଶଳ ତିନିପ୍ରକାର— ବିଭାବ, ଅନୁଭାବ ଓ ସଞ୍ଚାରୀ ଭାବ ।

ବିଭାବ କଣ ?

ରତ୍ୟାଦ୍ୟୁଦ୍‌ବୋଧକା ଲୋକେ
ବିଭାବାଃ କାବ୍ୟନାଟ୍ୟୟୋଃ । ୪

ଲୌକିକ ଜଗତରେ ଯାହା ରତି ପ୍ରଭୃତି ଭାବର ଉଦ୍‌ବୋଧକ, କାବ୍ୟରେ ବା ନାଟକରେ ତାହାକୁ 'ବିଭାବ' କହନ୍ତି । ଯେପରି—

> ଯେ ହି ଲୋକେ ରାମାଦିଗତ-ରତି-ହାସାଦୀନାମୁଦ୍‌ବୋଧକାରଣାନି ସୀତାଦୟସ୍ତ ଏବ କାବ୍ୟେ ନାଟ୍ୟେ ଚ ନିବେଶିତାଃ ସନ୍ତୋ ବିଭାବ୍ୟନ୍ତେ ଆସ୍ୱାଦାଙ୍କୁର ପ୍ରାଦୁର୍ଭାବଯୋଗ୍ୟାଃ କ୍ରିୟନ୍ତେ ସାମାଜିକରତ୍ୟାଦି —ଭାବାଃ ଏଭିଃ ଇତି ବିଭାବ ଉଚ୍ୟନ୍ତେ । ୪

ଲୌକିକ ଜଗତରେ ସୀତା ଓ ତାଙ୍କ ରୂପ, ଗୁଣ, ଚେଷ୍ଟା ରାମଙ୍କ ମନରେ ରତି ହର୍ଷ ପ୍ରଭୃତି ଭାବର ଉଦ୍‌ବୋଧର କାରଣ, ତେଣୁ ଯେତେବେଳେ କାବ୍ୟ ନାଟକରେ ନିବେଶିତ ହୁଏ, ସେତେବେଳେ ତାହାକୁ ବିଭାବ କୁହାଯାଏ । କାରଣ, ତାହା ପାଠକ ଓ ସାମାଜିକଙ୍କ ମନରେ ରତ୍ୟାଦି ଭାବକୁ ଏଭଳି ପରିଣତି ଦାନ କରିଥାଏ ଯେ, ତାହାଠାରୁ ଆସ୍ୱାଦ-ଅଙ୍କୁର ନିର୍ଗତ ହୁଏ ।

---

୪ । ସାହିତ୍ୟଦର୍ପଣ ।

ଅନୁଭବ କୁହାଯାଏ କାହାକୁ ?

ଉଦ୍‌ବୁଦ୍ଧଂ କାରଣୈଃ ସ୍ୱୈଃ ସ୍ୱୈର୍ ବହିର୍ଭାବଂ ପ୍ରକାଶୟନ୍ ।
ଲୋକେ ଯଃ କାର୍ଯ୍ୟରୂପଃ ସୋଽନୁଭାବ କାବ୍ୟନାଟ୍ୟୟୋଃ । ୪

ମନରେ ଭାବ ଉଦ୍‌ବୁଦ୍ଧ ହେଲେ, ଯେଉଁସବୁ ସ୍ୱାଭାବିକ ବିକାର ଓ ଉପାୟରେ ତାହା ବାହାରେ ପ୍ରକାଶ ପାଏ, ଭାବରୂପ କାରଣର ସେଇସବୁ ଲୌକିକ କାର୍ଯ୍ୟ କାବ୍ୟ ଓ ନାଟକର ଅନୁଭାବ ।

ହ୍ରିଧାୟୁକଜଡ଼ିତ ପଦେ କଂପବକ୍ଷେ ନମ୍ର ନେତ୍ରପାତେ
ସ୍ମିତହାସ୍ୟେ ନାହି ଚଳ ସଲଜ୍ଜିତ ବାସର ଶଯ୍ୟାତେ
ସ୍ତବ୍ଧ ଅର୍ଦ୍ଧରାତେ ।

'ମିଳନ-ମଧୁର-ଲଜ୍ଜା'ର ଏଇ କାବ୍ୟ-ଛବିଟିର ଉପାଦାନ ହେଉଛି କେତୋଟି ଅନୁଭାବ ।

ଏହାପରେ ଆଚାର୍ଯ୍ୟ ଅଭିନବଗୁପ୍ତ ଏକ ଦୀର୍ଘ ସମାସବାକ୍ୟରେ ଯେଉଁ କାବ୍ୟରସର ସଂଜ୍ଞା ଦେଇଛନ୍ତି ସେଇଟି ଉଦ୍ଧୃତ କରାଯାଇପାରେ । ବିନା ବ୍ୟାଖ୍ୟାରେ ଏଠି ତା'ର ଅର୍ଥବୋଧ ହେବ ।

ଶବ୍ଦସମର୍ପ୍ୟମାନହୃଦୟସମ୍ବାଦସୁନ୍ଦରବିଭାବାନୁଭାବସମୁଦିତ
ପ୍ରାଙ୍‌ନିବିଷ୍ଟ ରତ୍ୟାଦି ବାସନାନୁରାଗସୁକୁମାର-ସ୍ୱସଂବିଦାନନ୍ଦ
ଚର୍ବଣବ୍ୟାପାର-ରସନୀୟ-ରୂପୋ ରସଃ । (୫)

ରସ ହେଉଛି ନିଜର ଆନନ୍ଦମୟ ସମ୍ବିତର (consciousness) ଆସ୍ୱାଦରୂପ ବସ୍ତୁ । ମନର ପୂର୍ବନିବିଷ୍ଟ ରତି ପ୍ରଭୃତି ଭାବର ବାସନାଦ୍ୱାରା ଅନୁରଞ୍ଜିତ ହୋଇ ଅନ୍ୱିତ ଆନନ୍ଦମୟ ସୌକୁମାର୍ଯ୍ୟପ୍ରାପ୍ତ ହୁଏ । ଲୌକିକ ଭାବର କାରଣ ଓ କାର୍ଯ୍ୟ କବିର ଗ୍ରଥିତ ଶବ୍ଦରେ ସମର୍ପିତ ହୋଇ, ସକଳ ହୃଦୟରେ ସମବାଦୀ ମନୋରମ ବିଭାବ ଓ ଅନୁଭାବ ରୂପ ପ୍ରାପ୍ତହୁଏ, ସେଇ ବିଭାବ ଓ ଅନୁଭବ ହିଁ କାବ୍ୟ-ପାଠକର ଅନ୍ତର୍ନିବିଷ୍ଟ ଭାବକୁ ଉଦ୍‌ବୁଦ୍ଧ କରେ ।

ଅଭିନବଗୁପ୍ତ ବିଭାବ ଓ ଅନୁଭାବକୁ କହିଛନ୍ତି—ସକଳ ହୃଦୟରେ ସମବାଦୀ । କାରଣ, ଯେଉଁ ଲୌକିକ ଭାବର ସେଗୁଡ଼ିକ

୪ । ସାହିତ୍ୟଦର୍ପଣ
୫ । ଅଭିନବଗୁପ୍ତ ୧/୪

ରସମୂର୍ତ୍ତି, ସେହି ଲୌକିକ ଭାବ ବ୍ୟକ୍ତିର ହୃଦୟରେ ଆବଦ୍ଧ ଥାଏ, ତାହା ସାମାଜିକ ନୁହେଁ ।

ପାରମିତ୍ୟାଲ୍ଲୌକିକତ୍ୱାତ୍
    ସାନ୍ତରାୟତୟା ତଥା ।
ଅନୁକାର୍ଯ୍ୟସ୍ୟ ରତ୍ୟାଦେ
    ରୁଦ୍‌ବୋଧୋ ନ ରସୋ ଭବେତ୍ (୭)

ପ୍ରେମିକର ମନରେ ଯେଉଁ ପ୍ରେମର ଉଦ୍‌ବୋଧ, ତାହା ରସ ନୁହେଁ । କାରଣ, ତାହା ପ୍ରେମିକର ନିଜ ହୃଦୟରେ ଆବଦ୍ଧ, ସୁତରାଂ ସୀମିତ, ତା ଲୌକିକ ସୁତରାଂ ପ୍ରେମର ରସବୋଧର ଅନ୍ତରାୟ । କବି ତାଙ୍କ ପ୍ରତିଭାର ମାୟାରେ ଏଇ ପରିମିତ ଲୌକିକ ଭାବକୁ···ସକଳ ସହୃଦୟହୃଦୟସମ୍ବାଦୀ ଅଲୌକିକ ରସମୂର୍ତ୍ତିରେ ରୂପାନ୍ତର କରନ୍ତି । କାବ୍ୟର ବିଭାବ ଓ ଅନୁଭାବ ମଧ୍ୟରେ ଏହିପରି ଗୋଟିଏ ବ୍ୟାପାର ଅଛି, ଯେଉଁଥିରେ କାବ୍ୟବର୍ଣ୍ଣିତ ଚରିତ୍ର ବା ଭାବ ଏବଂ ପାଠକ ମଧ୍ୟରେ ଗୋଟିଏ ସାଧାରଣ ସମ୍ବନ୍ଧ ସୃଷ୍ଟି ହୁଏ—

ବ୍ୟାପାରୋଽସ୍ତି ବିଭାବାଦେର୍‌ନାମ୍ନା ସାଧାରଣୀକୃତିଃ ।

ଯାହା ଫଳରେ—

ପରସ୍ୟ ନ ପରସ୍ୟେତି
    ମମେତି ନ ମମେତି ଚ ।
ତଦାସ୍ୱାଦେ ବିଭାବାଦେଃ
    ପରିଚ୍ଛେଦୋନ ବିଦ୍ୟତେ । (୭)

କାବ୍ୟ ପାଠକର ମନେହୁଏ କାବ୍ୟର ଚରିତ୍ର ଓ ଭାବ ପରର, କିନ୍ତୁ ସମ୍ପୂର୍ଣ୍ଣ ପରର ନୁହେଁ, ମୋ ନିଜର, କିନ୍ତୁ ସମ୍ପୂର୍ଣ୍ଣ ମୋ ନିଜର ମଧ୍ୟ ନୁହେଁ । ଏହିପରି ଭାବେ କାବ୍ୟର ଆସ୍ୱାଦ କୌଣସି ବ୍ୟକ୍ତିଭିତର ପରିଚ୍ଛେଦରେ ପରିଚ୍ଛିନ୍ନ ନଥାଏ ।

---

୭ । ସାହିତ୍ୟଦର୍ପଣ ।

କାବ୍ୟର ସୃଷ୍ଟି ଯେଉଁ ସକଳ ହୃଦୟରେ ସମ-ବାଦୀ, ତାହାର ଅର୍ଥ ନୁହେଁ ଯେ, ବିଜ୍ଞାନର ଜ୍ଞାନପରି ତାହା ଗୋଟିଏ Abstract ଜନିଷ । କବି ଯେଉଁ ଭାବ ବା ଚରିତ୍ର ଆଙ୍କନ୍ତି ତାହା •ବର୍ଣ୍ଣରୂପହୀନ outline ନୁହେଁ, ସମ୍ପୂର୍ଣ୍ଣ concrete ଭାବ ବା ଚରିତ୍ର । କିନ୍ତୁ ତାହା ମଧ୍ୟରେ ହିଁ ନିଖିଳ ସହୃଦୟ ଜନ ନିଜନିଜକୁ ପ୍ରତିଫଳିତ ଦେଖନ୍ତି । ଅର୍ଥାତ୍ କାବ୍ୟର ସୃଷ୍ଟି Concrete universalର ସୃଷ୍ଟି ।

ଏଇଥିପାଇଁ କବି ଯେତେବେଳେ କାବ୍ୟର ଭାବକୁ ରସ ମୂର୍ତ୍ତିରେ ରୂପାନ୍ତରିତ କରନ୍ତି, ସେତିକବେଳେ ସେ ଲୌକିକ ପରିମିତତ୍ୱ ଟପି-ଯାଆନ୍ତି । ଲୌକିକ ଭାବର ଗଣ୍ଡି ମଧ୍ୟରେ ଆବଦ୍ଧ ଓ ଅଭିଭୂତ ରହିଲେ ଯେପରି କାବ୍ୟରସର ଆସ୍ୱାଦ ହୁଏନା, ସେହିପରି କାବ୍ୟରସର ସୃଷ୍ଟି ମଧ୍ୟ ହୁଏନାହିଁ । ଧ୍ୱନ୍ୟାଲୋକରେ ଗୋଟିଏ କାରିକା ଅଛି—

କାବ୍ୟସ୍ୟାତ୍ମା ସ ଏବାର୍ଥସ୍ତଥା ଚାଦିକବେଃ ପୁରା ।<br>କ୍ରୌଞ୍ଚଦ୍ୱନ୍ଦ୍ୱ ବିୟୋଗୋତ୍ଥଃ ଶୋକଃ ଶ୍ଳୋକତ୍ୱମାଗତଃ ।। (୭)

ସେଇ ରସ ହିଁ ହେଉଛି କାବ୍ୟର ଆତ୍ମା । ଯେପରି, ପୁରାତନୀ କଥାରେ କୁହାଯାଏ, ଆଦିକବିର କ୍ରୌଞ୍ଚଦ୍ୱନ୍ଦ୍ୱ-ବିୟୋଗଜନିତ ଶୋକ ହିଁ ଶ୍ଳୋକ ରୂପେ ପରିଣତ ହୋଇଥିଲା । କାରିକାଟିରେ ରଘୁବଂଶର ଗୋଟିଏ ଶ୍ଳୋକର କାବ୍ୟକୁ ତତ୍ତ୍ୱ ରୂପ ଦିଆହୋଇଛି । (୮) ଏଇ କାରିକାଟି ପ୍ରସଙ୍ଗରେ ଅଭିନବଗୁପ୍ତ ଲେଖିଛନ୍ତି—ଏକଥା ମାନିବାକୁ ହେବ ଯେ, ଏ ଶୋକ ମୁନିଙ୍କର ନିଜର ଶୋକ ନୁହେଁ । ଯଦି ତାହା ହୋଇଥାନ୍ତା, ତେବେ କ୍ରୌଞ୍ଚ ଶୋକରେ ମୁନି ଦୁଃଖିତ ହୋଇ ହିଁ ଥାଆନ୍ତେ, କରୁଣ ରସର ଶ୍ଳୋକ ରଚନାର ଅବକାଶ ହୋଇନଥାନ୍ତା । କାରଣ କେବଳ ଦୁଃଖ ସନ୍ତପ୍ତ କାବ୍ୟରଚନା କରିବା କେବେ ଦେଖାଯାଏ ନାହିଁ ।

---

୭ । ଧ୍ୱନ୍ୟାଲୋକ, ୧/୫

୮ । ନିଷାଦବିଦ୍ଧାଣ୍ଡଜଦର୍ଶନୋତ୍ଥଃ । ଶ୍ଳୋକତ୍ୱମାପଦ୍ୟତ ଯସ୍ୟ ଶୋକଃ ।। (ରଘୁବଂଶ ୧୪/୭୦)

ନତୁ ମୁନେଃ ଶୋକ ଇତି ମନ୍ତବ୍ୟମ୍ । ଏବଂ ହି ସତି
ତଦ୍ଦୁଃଖେନ ସୋଽପି ଦୁଃଖିତ ଇତି କୃତ୍ୱା ରସସ୍ୟାତ୍ମତେତି
ନିରବକାଶଂ ଭବେତ୍ । ନତୁ ଦୁଃଖ ସନ୍ତପ୍ତ ସ୍ୟୈଷାଦଶେତି ।

ଅଭିନବଗୁପ୍ତ କହନ୍ତି, ଏଠି ଯାହା ଘଟିଛି, ତାହା ଏପରି— 'ସହଚରୀ ବିୟୋଗ-କାତର କ୍ରୌଞ୍ଚର ଶୋକ ମୁନିଙ୍କ ମନରେ ଲୌକିକ ଶୋକଠାରୁ ଭିନ୍ନ, ନିଜ ଚିତ୍ତବୃତ୍ତିର ଆସ୍ୱାଦନ ସ୍ୱରୂପ କରୁଣ ରସର ରୂପ ପ୍ରାପ୍ତ ହୋଇଛି ଏବଂ ଯେପରି ପରିପୂର୍ଣ୍ଣ କୁମ୍ଭଠାରୁ ଜଳ ଉଚ୍ଛଳିତ ହୋଇପଡ଼େ, ସେହିପରି ଏଇ ରସ ମୁନିଙ୍କ ମନରୁ ଛନ୍ଦୋବୃତ୍ତି ନିୟନ୍ତ୍ରିତ ଶ୍ଳୋକ ରୂପେ ନିର୍ଗତ ହୋଇଛି ।'

ସହଚରୀହନନୋଦ୍ଭୂତେନ ସାହଚର୍ଯ୍ୟଧ୍ୱଂସନେନୋତ୍ଥିତୋ ଯଃ ଶୋକଃ·····ସ ଏବ ଆସ୍ୱାଦ୍ୟ ମାନତାଂ ପ୍ରତିପନ୍ନଃ କରୁଣରସରୂପତାଂ ଲୌକିକ ଶୋକବ୍ୟତିରିକ୍ତାଂ ସ୍ୱଚିତ୍ତଦ୍ରୁତିସମାସ୍ୱାଦ୍ୟସାରାଂ ପ୍ରତିପନ୍ନୋ ରସଃ ପରିପୂର୍ଣ୍ଣକୁମ୍ଭୋଚ୍ଛଳନବତ୍·····ସମୁଚିତ ଛନ୍ଦୋବୃତ୍ତନିୟନ୍ତ୍ରିତ ଶ୍ଳୋକରୂପତାଂ ପ୍ରାପ୍ତଃ ।

ଆଲଙ୍କାରିକମାନଙ୍କ ଦ୍ୱାରା ଆବିଷ୍କୃତ, ଲୌକିକଭାବକୁ କାବ୍ୟ-ରସରେ ରୂପାନ୍ତରିତ କରିବାର ଏଇ ତତ୍ତ୍ୱଟି, ଇଟାଲିୟାନ୍ ଦାର୍ଶନିକ ବେନେଡେଟୋ କ୍ରୋଚେ ଯଥେଷ୍ଟ ବୁଝିପାରିଛନ୍ତି । ତାଙ୍କର 'କାବ୍ୟ ଓ ଅକାବ୍ୟ' ନାମକ ଗ୍ରନ୍ଥରେ କ୍ରୋଚେ ଲେଖିଛନ୍ତି—

What should we call the blindness of a poet ? The incapacity of seeing particular passions in the light of human passion, aspirations in the fundamental and total aspiration, partial and discordant idsale in the ideal which shall compose them in harmony : what at one time was called incapacity of 'idealizing'. For poetic idealization is not a frivolous embellishment, but a profound penetration, in virtue of which we pass from troublous emotion to the

serenity of contemplation. He who fails to accomplish this passage, but remains immersed in passionate agitation, never succeeds in bestowing pure poetic joy either upon others or upon himself, whatever may be his efforts. (୧)

କ୍ରୋଚେଙ୍କର Poetic idealization ଆଳଙ୍କାରିକମାନଙ୍କର 'ଭାବ ଓ ତା'ର କାରଣ କାର୍ଯ୍ୟ'ର ସକଳ ହୃଦୟସମ୍ବାଦୀ' ବିଭାବ ଅନୁଭାବର ପରିଣତି । କ୍ରୋଚେଙ୍କର 'Passage from troublous emotion to the serenity of Contemplation' ଆଳଙ୍କାରିକମାନଙ୍କର ଲୌକିକ ଭାବକୁ ଆସ୍ୱାଦ୍ୟମାନ ରସରେ ରୂପାନ୍ତର । Serenity of contemplation ହେଉଛି ଦାର୍ଶନିକ-ସୁଲଭ ମନନବୃତ୍ତି ଆଡ଼କୁ ଟାଣି କଥା କହିବା । ଆଳଙ୍କାରିକମାନଙ୍କର 'ରସଚର୍ବଣ' କଥାଟା ମୂଳସତ୍ୟକୁ ଖୁବ୍ ବେଶୀ ଫୁଟାଇପାରିଛି ।

କବି ଓ୍ୱାର୍ଡ୍ସ୍‌ଓ୍ୱାର୍ଥ ଯେପରି କାବ୍ୟତତ୍ତ୍ୱର ବ୍ୟାଖ୍ୟା କରି କହିଥିଲେ, 'Poetry takes its origin from emotions recollected in tranquillity', ତାହା ଆଳଙ୍କାରିକମାନଙ୍କର 'ରୂପାନ୍ତରବାଦର ଅସ୍ପଷ୍ଟ ଅନୁଭୂତି ଓ ଅସ୍ପଷ୍ଟ ବିବୃତି ମାତ୍ର ।

ଆଜିର ଏଇ ଲିରିକ୍ କାବ୍ୟଯୁଗରେ, ଯେତେବେଳେ କବିର ନିଜ ମନର ଭାବ ହିଁ କାବ୍ୟର ମୁଖ୍ୟ ଉପାଦାନ, ସେତେବେଳେ ଏଇ ଭ୍ରମ ସହଜରେ ହିଁ ହେବ ଯେ, କବିର ହୃଦୟର ଭାବକୁ ପାଠକ ହୃଦୟରେ ସଞ୍ଚାରିତ କରିବା ହିଁ କାବ୍ୟର ଲକ୍ଷ୍ୟ ବୋଲି ବୁଝିବାକୁ ପଡ଼ିବ । ଯେଉଁ କବିର ହୃଦୟର ଭାବ ଯେତେ ତୀବ୍ର ଓ ଯେତେ ଆବେଗମୟ ତାଙ୍କର କାବ୍ୟରଚନା ସେତେ ସାର୍ଥକ । କିନ୍ତୁ ଲିରିକ୍ ଆଳଙ୍କାରିକମାନଙ୍କର କାବ୍ୟ ବିଶ୍ଳେଷଣର ବାହାରେ କିଛି ନୁହେଁ । ଭାବ ଯଦି କବିଙ୍କ ମନରେ ରସର ମୂର୍ତ୍ତି ପରିଗ୍ରହ କରେ ନାହିଁ, ତେବେ କବି କେବେ ତାହାକୁ

(୧) European Literature in Nineteenth century ନାମରେ ଇଂରାଜୀ ଅନୁବାଦ, ପୃ: ୫୨ ।

ସେହି ବିଭାବ ଓ ଅନୁଭାବରେ ପ୍ରକାଶ କରିପାରନ୍ତି ନାହିଁ, ଯାହା ପାଠକର ମନରେ ବି ସେଇ ରସର ରୂପ ଫୁଟାଇପାରେ । ମନରେ ଯାହାଦ୍ୱାରା ଭାବ ଉଦ୍‌ଭବ ହୁଏ, ତାହା ଯଦି କାବ୍ୟ ହୁଅନ୍ତା, ତେବେ ଆଜି ଭାରତରେ ଯେଉଁସବୁ ଖବରକାଗଜ ମୁସଲମାନ ଉପରେ ହିନ୍ଦୁର ଓ ହିନ୍ଦୁ ଉପରେ ମୁସଲମାନଙ୍କର କ୍ରୋଧ ଜଗାଇବାର ଉଦ୍ୟମ କରୁଛନ୍ତି ସେଗୁଡ଼ିକ ପ୍ରଥମ ଶ୍ରେଣୀର କାବ୍ୟ ହୋଇପାରନ୍ତା । କାରଣ ଅନେକ ହିନ୍ଦୁ ମୁସଲମାନଙ୍କର କ୍ରୋଧ ତାହାଦ୍ୱାରା ଜାଗ୍ରତ ହେଉଛି । ଅଭିନବଗୁପ୍ତ ଉଦାହରଣ ଦେଇଛନ୍ତି—'ତୁମର ପୁଅ ଜନ୍ମହୋଇଛି' ଏହି କଥା ଶୁଣି ପିତାର ଯେଉଁ ହର୍ଷ ଜନ୍ମେ, ତାହା ରସ ନୁହେଁ କିମ୍ବା ଏହି ବାକ୍ୟଟି କାବ୍ୟ ନୁହେଁ । 'ପୁତ୍ରସ୍ତେ ଜାତଃ' ଇତ୍ୟାତୋ ଯଥା ହର୍ଷୋ ଜାୟତେ ତଥା ନାପି ଲକ୍ଷଣୟା । ଅପିତୁ ସହୃଦୟସ୍ୟ ହୃଦୟସମ୍ବାଦ ବଲାଦ୍‌ବିଭାବାନୁଭାବପ୍ରତୀତୌ ପ୍ରସିଦ୍ଧସ୍ୱଭାବ ସୁଖାଦବିଲକ୍ଷଣଃପ ରତ୍ନ ରତ୍‌ ୧।୪ କିନ୍ତୁ କବି ସମୁଚିତ ବିଭାବ ଓ ଅନୁଭାବ ଦ୍ୱାରା, ସହୃଦୟ ପାଠକର ଅନୁବାଦ ତନ୍ମୟୀଭୂତ ମନରେ ଏହି ହର୍ଷକୁ ହିଁ ସ୍ୱଭାବସିଦ୍ଧ ସୁଖଠାରୁ ବିଭିନ୍ନ ଲକ୍ଷଣ, ଆସ୍ୱାଦମାନ ରସ ରୂପରେ ପରିଣତ କରାଇ ପାରନ୍ତି । ଯେପରି କାଳିଦାସ ରଘୁର ଜନ୍ମ ଶ୍ରବଣ କରି ଦିଲୀପଙ୍କର ହର୍ଷ ଫୁଟାଇଛନ୍ତି—

> ଜନାୟ ଶୁଦ୍ଧାନ୍ତ ଚରାୟ ଶଂସତେ, କୁମାରଜନ୍ମାମୃତସମ୍ମିତାକ୍ଷରମ୍
> ଅଦେୟମାସୀତ୍ ତ୍ରୟମେବ ଭୂପତେଃ, ଶଶିପ୍ରଭଂ ଛତ୍ରମୁଭେଚ
> ଚାମରେ ॥
>
> ନିବାତ ପଦ୍ମାସ୍ତିମିତେନ ଚକ୍ଷୁଷା, ନୃପସ୍ୟ କାନ୍ତଂ ପିବତଃ ସୁତାନନମ୍
> ମହୋଦଧେଃ ପୂର ଇବେନ୍ଦୁଦର୍ଶନାଦ୍‌ଗୁରୁଃ ପ୍ରହର୍ଷ ପ୍ରବଭୂବ
> ନାତ୍ମନି ॥

ତେବେ ମହା ଭବୋଦ୍‌ବେଳ କବିର ଆବେଗମୟ କାବ୍ୟ କାବ୍ୟରମଣୀୟତାରୁ ବଞ୍ଚିତ ନୁହେଁ, ତାହାର କାରଣ, ଭାବ 'ଶବ୍ଦରେ ସମର୍ପିତ' ହୋଇଥିଲେ ହିଁ ବ୍ୟକ୍ତିଗତ ଲୌକିକତାର ଗଣ୍ଡିରୁ କେତେକ ମୁକ୍ତ ହୁଏ । ତାହାଁକ ନା ଭାଷା ଜନପଦ୍ଧିଟି ହିଁ ସାମାଜିକ । କିନ୍ତୁ ଲିରିକ୍

ଯେତେ ଭାବ-ବାହ୍ଯ ହୁଏ ସେତେଟା ଯେ' ଶ୍ରେଷ୍ଠ ହୁଏ ନାହିଁ ତାହା ଯେକୌଣସି ଶ୍ରେଷ୍ଠ କାବ୍ୟର ଉଦାହରଣ ନେଲେ ହିଁ ଦେଖାଯାଏ । ଧରାଯାଉ ରବୀନ୍ଦ୍ରନାଥଙ୍କର 'ଅନନ୍ତପ୍ରେମ'—

ତୋମାରେଇ ଯେନ ଭାଲୋବାସିୟାଛି ଶତରୂପେ ଶତବାର
ଜନମେ ଜନମେ, ଯୁଗେ ଯୁଗେ ଅନିବାର । X X X
ଆମରା ଦୁଜନେ ଭାସିୟା ଏସେଛି
ଯୁଗଲ ପ୍ରେମେର ସ୍ରୋତେ
ଅନାଦିକାଲେର ହୃଦୟ-ଉତ୍ସ ହତେ ।
ଆମରା ଦୁଜନେ କରିୟାଛି ଖେଲା
କୋଟି ପ୍ରେମିକେର ମାଝେ,
ବିରହ ବିଧୂର ନୟନ ସଲିଲେ
ମିଲନମଧୁର ଲାଜେ
ପୁରାତନ ପ୍ରେମ ନିତ୍ୟ ନୂତନ ସାଜେ ।

ଏହା ସହିତ ଯଦି ହେମଚନ୍ଦ୍ରଙ୍କର 'ଆବାର ଗଗନେ କେନ ସୁଧାଂଶୁ ଉଦୟ ରେ', କିମ୍ବା ନବୀନଚନ୍ଦ୍ରଙ୍କର 'କେନ ଦେଖିଲାମ' ତୁଳନା କରାହୁଏ, ତାହେଲେ କାବ୍ୟରେ ରସ ଓ ଭାବର ଉଚ୍ଛ୍ୱାସର ପ୍ରଭେଦ ହୃଦୟଙ୍ଗମ ହେବ ।

ଆଳଙ୍କାରିକମାନେ ବିଭାବ ଓ ଅନୁଭାବ ଛଡ଼ା ସଞ୍ଚାରୀ ନାମରେ କାବ୍ୟ କୌଶଳର ଯେଉଁ ତୃତୀୟ କଳାର ଉଲ୍ଲେଖ କରିଛନ୍ତି, ତାହାର ପରିଚୟ ଦେବାକୁ ହେଲେ, ଭାବର ଯେଉଁ ମନୋବିଜ୍ଞାନ ଉପରେ ଆଳଙ୍କାରିକମାନେ ସେମାନଙ୍କର ରସତତ୍ତ୍ୱର ଭିତ୍ତି ଗଢ଼ିଛନ୍ତି, ତାହାର ଟିକିଏ ବିବରଣ ଦେବାକୁ ହେବ ।

ମଣିଷର ମନର ଭାବ ବା Emotion ଅନନ୍ତ । କାରଣ Emotion ଶୁଦ୍ଧ feeling ବା ସୁଖଦୁଃଖାନୁଭୂତି ନୁହେଁ । ଆଧୁନିକ ମନୋବିଦ୍ୟାବିଦ୍‌ମାନଙ୍କର ଭାଷାରେ Emotion ହେଉଛି ଗୋଟିଏ

complete psychosis, ସର୍ବାବସ୍ଥବମାନସିକ ଅବସ୍ଥା । ଅର୍ଥାତ୍ Emotion ବା ଭାବରେ ସୁଖଦୁଃଖାନୁଭୂତି କେତେକ Idea ବା ଜ୍ଞାନକୁ ଅବଲମ୍ବନ କରି ବିଦ୍ୟମାନ ଥାଏ । ଏଇ ଆଇଡ଼ିଆ ପୁଞ୍ଜର କୌଣସି ଅଂଶର କିଛି ପରିବର୍ତ୍ତନ ଘଟିଲେ ହିଁ Emotion ବା ଭାବ ନାମକ ମାନସିକ ଅବସ୍ଥାଟିର ମଧ୍ୟ ସଙ୍ଗେ ସଙ୍ଗେ ପରିବର୍ତ୍ତନ ଘଟେ । ଆଇଡ଼ିଆର ସଂଖ୍ୟା ଅଗଣ୍ୟ ଏବଂ ସେଗୁଡ଼ିକର ପରସ୍ପର ଯୋଗ-ବିଯୋଗର ପ୍ରକାର ଅସଂଖ୍ୟ । ସୁତରାଂ ଭାବ ବା Emotion ସଂଖ୍ୟା ସଂଖ୍ୟାତୀତ ଏବଂ କୌଣସି ଭାବ ଅନ୍ୟ ଭାବର ସମ୍ପୂର୍ଣ୍ଣ ସଦୃଶ ନୁହେଁ । ତେବେ ମଧ୍ୟ, ଯେପରି ମନୋବିଜ୍ଞାନବିଦ୍ ସେପରି ଆଳଙ୍କାରିକ, କାର୍ଯ୍ୟର ସୁବିଧା ପାଇଁ, ଅଗଣ୍ୟ ସ୍ୱଲକ୍ଷଣ ଭାବ ମଧ୍ୟରେ କେତେ ପ୍ରକାରର ଭାବକୁ, ସାଦୃଶ୍ୟ-ବଶତଃ କେତୋଟି ସାଧାରଣ ନାମରେ ନାମାଙ୍କିତ କରି ପୃଥକ୍ କରି ନେଇଛନ୍ତି । ଆଳଙ୍କାରିକମାନେ ଏଇ ପ୍ରକାର ନଅଟି ପ୍ରଧାନ ଭାବ ସ୍ୱୀକାର କରିଛନ୍ତି—ରତି, ହାସ, ଶୋକ, କ୍ରୋଧ, ଉତ୍ସାହ, ଭୟ, ଜୁଗୁପ୍ସା, ବିସ୍ମୟ ଓ ଶମ ।

ରତିର୍ହାସଶ୍ଚ ଶୋକଶ୍ଚ କ୍ରୋଧୋତ୍ସାହୌ ଭୟଂ ତଥା ।
ଜୁଗୁପ୍ସା ବିସ୍ମୟଶ୍ଚେତ୍ୟଷ୍ଟୌ ପ୍ରୋକ୍ତାଃ ଶମୋଽପିଚ ।।

ଏଇ ନଅଟି ଭାବକୁ ସେମାନେ କହନ୍ତି 'ସ୍ଥାୟୀଭାବ' । କାରଣ,

ବହୂନାଂ ଚିତ୍ତବୃତ୍ତିରୂପାନାଂ ଭାବାନାଂ ମଧ୍ୟେ ଯସ୍ୟ ବହୁଲଂ
ରୂପଂ ଯଥୋପଲଭ୍ୟତେ ସ ସ୍ଥାୟୀ ଭାବଃ । ୧୦

ଭାବରୂପରି ବହୁ ଚିତ୍ତବୃତ୍ତି ମଧ୍ୟରେ ଯେଉଁ ଭାବ ମନରେ ବହୁଳଭାବେ ପ୍ରସ୍ତୁୟମାନ ହୁଏ ସେଇଟି ସ୍ଥାୟୀ ଭାବ । ଆଳଙ୍କାରିକମାନଙ୍କ ମତରେ ଏଇ ନଅଟିଭାବ କାବ୍ୟର ବିଭାବ, ଅନୁଭାବ ସଂସ୍ପର୍ଶରେ, ଯଥାକ୍ରମେ ନଅଟି ରସରେ ପରିଣତ ହୁଏ—ଶୃଙ୍ଗାର, ହାସ୍ୟ, କରୁଣ, ରୌଦ୍ର, ବୀର, ଭୟାନକ, ବୀଭତ୍ସ, ଅଦ୍ଭୁତ ଓ ଶାନ୍ତ ।

ଶୃଙ୍ଗାର ହାସ୍ୟ କରୁଣରୌଦ୍ରବୀରଭୟାନକାଃ
ବୀଭତ୍ସୋଽଦ୍ଭୁତ ଇତ୍ୟଷ୍ଟୌ ରସାଃ ଶାନ୍ତସ୍ତଥା ମତଃ ।।

---

୧୦ । ଅଭିନବଗୁପ୍ତ, ୩/୨୪

ନାହିଁ ଏଇ ନଅଟି ଛଡ଼ା ଅବଶ୍ୟ ମଣିଷ ମନରେ ବହୁଭାବ ଅଛି ଓ ଆଲଙ୍କାରିକଙ୍କ ମତରେ ତା' ମଧରେ ଅନେକ ଭାବ, କାବ୍ୟର ବିଭାବ ଓ ଅନୁଭାବରେ ଆସ୍ୱାଦ୍ୟମାନତା ପ୍ରାପ୍ତ ହୁଏ । ଆଲଙ୍କାରିକମାନେ ନିର୍ବେଦ, ଲଜ୍ଜା, ହର୍ଷ, ଅସୂୟା, ବିଷାଦ ପ୍ରଭୃତି ଏପରି କେତୋଟି ଭାବର ନାମ କହନ୍ତି ଏବଂ ତାଛଡ଼ା ଆହୁରି ଯେ ଅନେକ ଭାବ ଅଛି ତାହା ସ୍ୱୀକାର କରନ୍ତି ।

ନିୟସ୍ତ୍ରିଂଶଦିତି ନ୍ୟୂନସଂଖ୍ୟାଯା ବ୍ୟବଚ୍ଛେଦକଂ ନ ଉଧିକ ସଂଖ୍ୟାୟାଃ ।

ଏଇ ସବୁ ଭାବକୁ ଆଲଙ୍କାରିକମାନେ କହିଛନ୍ତି ସଞ୍ଚାରୀ ବା ବ୍ୟଭିଚାରୀ ଭାବ । ସେମାନଙ୍କର ଯୁକ୍ତିରେ ହେଉଛି, ଏଇ ସବୁ ଭାବ ମନରେ ସ୍ୱତନ୍ତ୍ରଭାବେ ନଥାଏ; କୌଣସି ଏକ ସ୍ଥାୟୀ ଭାବର ସମ୍ପର୍କରେ ହିଁ ମନରେ ଯାତାୟାତ କରେ ଓ ସେଇ ସ୍ଥାୟୀଭାବ ଅଭିମୁଖେ ମନକୁ ଚାଳିତ କରେ । ତେଣୁ ଏଗୁଡ଼ିକର ନାମ ସଞ୍ଚାରୀ ବା ବ୍ୟଭିଚାରୀ । (୧୧)

ଭାବର ଏଇ ଯୁକ୍ତିରୁ ସ୍ୱଭାବତଃ ରସର ଯୁକ୍ତିରେ ଆସିଅଛି । କାବ୍ୟରେ ସଞ୍ଚାରୀ ଭାବର ସ୍ୱତନ୍ତ୍ର ରସମୂର୍ତ୍ତି ନାହିଁ, ସେଗୁଡ଼ିକର ଆସ୍ୱାଦ୍ୟ-ମାନତା ସ୍ଥାୟୀଭାବର ପରିଣତି ନଅଟି ରସକୁ ହିଁ ନାନାଭାବରେ ପରିପୁଷ୍ଟି ଦାନ କରେ । ସୁତରାଂ ଯଦିଓ ନବରସର ରସତ୍ୱ ଅନେକ ପରିମାଣରେ ଏଇ ସଞ୍ଚାରୀର ଆସ୍ୱାଦନ ଉପରେ ନିର୍ଭର କରେ, ତଥାପି ଅନେକ ଆଲଙ୍କାରିକ ସ୍ୱାତନ୍ତ୍ର୍ୟ ଅଭାବରୁ ସଞ୍ଚାରୀ ଭାବର ପରିଣତିକୁ ରସ କହିବାକୁ ରାଜି ନୁହଁନ୍ତି । ଅଭିନବଗୁପ୍ତ କହିଛନ୍ତି—

ସ ଚ ରସୋ ରସୀକରଣଯୋଗ୍ୟଃ ଶେଷାସ୍ତୁ ସଞ୍ଚାରିଣ ଇତି ବ୍ୟାଚକ୍ଷ୍ୟତେ ।

ନ ତୁ ରସାନାଂ ସ୍ଥାୟିସଞ୍ଚାରି ଭାବେନାଙ୍ଗାଙ୍ଗିତା ଯୁକ୍ତା ।

---

୧୧ । ସ୍ଥିରତୟା ବର୍ତ୍ତମାନେ ହି ରତ୍ୟାଦୌ ନିର୍ବେଦାଦୟଃ ପ୍ରାଦୁର୍ଭାବତି ରୋଭାବାଭ୍ୟାମୁଖ୍ୟେନ ଚରଣାଦ୍‌ବ୍ୟଭିଚାରିଣଃ କଥ୍ୟନ୍ତେ ।

—ସାହିତ୍ୟଦର୍ପଣ ।

ସ୍ଥାୟୀ ଭାବର ପରିଣତି ହିଁ ରସ, ବାକିସବୁ ସଞ୍ଚାରୀ । ରସ ମଧ୍ୟରେ ମଧ୍ୟ ସ୍ଥାୟୀ ରସ ଓ ସଞ୍ଚାରୀ ରସ ଏହିପରି ଅଙ୍ଗୀ ଓ ଅଙ୍ଗର ବିଭାଗ ଯୁକ୍ତିଯୁକ୍ତ ନୁହେଁ । ତାହାହିଁ ଅଧିକାଂଶ ଆଳଙ୍କାରିକଙ୍କ ମତ । କିନ୍ତୁ ସ୍ଥାୟୀ ଓ ସଞ୍ଚାରୀର ଏଇ ପ୍ରଭେଦ ମୂଳଗତ ପ୍ରଭେଦ ନୁହେଁ ଓ ସଞ୍ଚାରୀଭାବର ରସରେ ପରିଣତ ହେବା ସମ୍ଭବ ନୁହେଁ—ଏହା ଯେପରି ଅତି ସାହସର କଥା । ସେଥିପାଇଁ ଆଳଙ୍କାରିକମାନଙ୍କ ମଧ୍ୟରେ ଏପରି ମତ ମଧ୍ୟ ପ୍ରଚଳିତ ଥିଲା ଯେ ସଞ୍ଚାରୀ ମଧ୍ୟ ରସ, କେବଳ ରସର ପରିପୁଷ୍ଟି ସାଧକ ନୁହେଁ, ଅଭିନବଗୁପ୍ତ ଭଗୁରି ନାମକ ଜଣେ ଆଳଙ୍କାରିକର ମତ ଦେଇଛନ୍ତି ।

ତଥା ଚ ଭଗୁରିରପି କିଂ ରସାନାମପି ସ୍ଥାୟିସଞ୍ଚାରିତାସ୍ତି ଇତ୍ୟାକ୍ଷିପ୍ୟାଭ୍ୟୁପଗମେନୈତଦବୋଚତ୍ ବାଢମସ୍ତିତି ।

ରସର ମଧ୍ୟ କିଣ ପୁଣି ସ୍ଥାୟୀ ଓ ସଞ୍ଚାରୀ ଭେଦ ଅଛି ? ଏହାର ଉତ୍ତରରେ ଭଗୁରି କହିଛନ୍ତି, ଅବଶ୍ୟ ଅଛି । ଆଉ ସମସ୍ତ ଆଳଙ୍କାରିକମାନଙ୍କୁ ସ୍ୱୀକାର କରିବାକୁ ହୋଇଛି ଯେ, କାବ୍ୟରେ ସ୍ଥାୟୀ ଓ ସଞ୍ଚାରୀ ଏଇ ଭେଦାଭେଦ ଆପେକ୍ଷିକ । କାରଣ, ଏକ କାବ୍ୟ ପ୍ରବନ୍ଧରେ ଯେତେବେଳେ ନାନା ରସ ଥାଏ, ସେତେବେଳେ ଦେଖାଯାଏ ଯେ, ତା' ତାହାର ଭିତରେ ଗୋଟିଏ ରସ ପ୍ରଧାନ ସ୍ଥାୟୀଭାବର ପରିଣତି । ଅନ୍ୟରସ ସବୁ ପରିପୋଷକ ହୋଇ ସଞ୍ଚାରୀର କାର୍ଯ୍ୟ କରୁଛନ୍ତି ।

ରସୋ ରସାନ୍ତରସ୍ୟ ବ୍ୟଭିଚାରୀ ଭବତି । (୧୨)

ଗୋଟିଏ ରସ ଅନ୍ୟରସର ବ୍ୟଭିଚାରୀର କାର୍ଯ୍ୟ କରେ ।

ପ୍ରସିଦ୍ଧେଽପି ପ୍ରବନ୍ଧାନାଂ ନାନାରସନିବନ୍ଧନେ
ଏକୋ ରସୋଽଙ୍ଗୀକର୍ତ୍ତବ୍ୟସ୍ତେଷା ମୁତ୍କର୍ଷମିଚ୍ଛତା । (୧୩)

---

୧୨ । ଧ୍ୱନ୍ୟାଲୋକ, ୩/୨୪

୧୩ । ଧ୍ୱନ୍ୟାଲୋକ, ୩/୨୧

'ଗୋଟିଏ କାବ୍ୟପ୍ରବନ୍ଧରେ ବିଭିନ୍ନ ରସ ଏକତ୍ର ଥିଲେ ମଧ୍ୟ କବିମାନେ କାବ୍ୟର ଉତ୍କର୍ଷ ପାଇଁ ତନ୍ମଧ୍ୟରୁ ଗୋଟିଏ ରସକୁ ହିଁ ପ୍ରଧାନ କରନ୍ତି ।' କାବ୍ୟରସ ସବୁ ତାର ପରିପୋଷକ ବା ସଞ୍ଚାରୀ । ଏହି ସଞ୍ଚାରୀ କାବ୍ୟର ଏତେଟା ସ୍ଥାନ ଯୋଡ଼ିଥାଏ ଯେ, ଆଲଙ୍କାରିକମାନଙ୍କ ମଧ୍ୟରେ ଏପରି ମତ ବି ପ୍ରଚଳିତ ହୋଇଥିଲା ଯେ, ସଞ୍ଚାରୀ ଦ୍ୱାରା ପରିପୁଷ୍ଟ ନହେଲେ ରସର ରସତ୍ୱ ହିଁ ହୁଏନାହିଁ ।

ପରିପୋଷରହିତସ୍ୟ କଥଂ ରସତ୍ୱମ୍ । (୧୪)

କବିରାଜ ବିଶ୍ୱନାଥ ଯେଉଁ କାରିକାରେ ରସ ଉତ୍ପତ୍ତିର ବର୍ଣ୍ଣନା ଦେଇଛନ୍ତି, ସାହିତ୍ୟ ଦର୍ପଣର ସେଇ କାରିକାଟି ଏଠି ଉଦ୍ଧାର କରାଯାଇପାରେ—

ବିଭାବେନାନୁଭାବେନ
ବ୍ୟକ୍ତଃ ସଞ୍ଚାରିଣା ତଥା ।
ରସତାମେତି ରତ୍ୟାଦିଃ
ସ୍ଥାୟୀଭାବଃ ସଚେତସାମ୍ ।।

'ମନର ରତି ପ୍ରଭୃତି ସ୍ଥାୟୀ ଭାବ, (କାବ୍ୟର) ବିଭାବ, ଅନୁଭାବ ଓ ସଞ୍ଚାରୀ ସଂଯୋଗରେ ରୂପାନ୍ତର ପ୍ରାପ୍ତ ହୋଇ ରସରେ ପରିଣତ ହୁଏ ।' ଆଶା କରାଯାଏ, ଏହାର ଆଉ ବର୍ତ୍ତମାନ ବ୍ୟାଖ୍ୟା କରିବା ନିଷ୍ପ୍ରୟୋଜନ ।

ଆଲଙ୍କାରିକମାନଙ୍କର ରସତତ୍ତ୍ୱକୁ ଗୋଟିଏ ଉଦାହରଣରେ ବିଶଦ ଭାବେ ବୁଝାଇ ଦିଆଯାଉ ।

ପାଣ୍ଡବମାନଙ୍କର ଅଜ୍ଞାତବାସ ଶେଷ ହୋଇଛି । ସଞ୍ଜୟ ଆସି ଯୁଧିଷ୍ଠିରଙ୍କୁ ସମ୍ବାଦ ଦେଲେ, ଦୁର୍ଯ୍ୟୋଧନ ବିନା ଯୁଦ୍ଧରେ କିଛି ଛାଡ଼ିବେ ନାହିଁ । ମନ୍ତ୍ରଣା ସଭାରେ ଠିକ୍ ହେଲା, ଶ୍ରୀକୃଷ୍ଣଙ୍କୁ ଦୂତ କରି ଦୁର୍ଯ୍ୟୋଧନ ଓ ଧୃତରାଷ୍ଟ୍ରଙ୍କ ପାଖକୁ ପଠାଯାଉ । ଯୁଧିଷ୍ଠିରଙ୍କ ପ୍ରଶ୍ନରେ ସମସ୍ତେ ମତ ଦେଲେ ଯୁଦ୍ଧ ନକରି ଶାନ୍ତିରେ ଯେପରି ବିବାଦ ମୀମାଂସା ହୁଏ, ସେହିପରି ଚେଷ୍ଟା କରିବା କର୍ତ୍ତବ୍ୟ । ଭୀମ ଶ୍ରୀକୃଷ୍ଣଙ୍କୁ କହିଲେ, 'ଯେପରି ଶାନ୍ତି ସ୍ଥାପନ

---

୧୪ । ଧ୍ୱନ୍ୟାଲୋକ, ୩/୨୪ ବୃତ୍ତି ।

ହେବ, ଯେଉ ଚେଷ୍ଟାକର, ଦୁର୍ଯ୍ୟୋଧନକୁ ଉଗ୍ର ଭାଷା ନକହି ମିଷ୍ଟଭାବରେ କୁହାଅ ।' ଶ୍ରୀକୃଷ୍ଣ ହସି କହିଲେ, 'ଭୀମର ଏଇ ଅକ୍ରୋଧ ଅଭୂତପୂର୍ବ । ଏହା ଯେପରି ଗୁରୁତ୍ୱହୀନ ପର୍ବତ, ତାପହୀନ ଅଗ୍ନି ସଦୃଶ ।' କେବଳ ସହଦେବ ଓ ସାତ୍ୟକି ସିଧାସଳଖ ଯୁଦ୍ଧପକ୍ଷରେ ମତ ଦେଇଥିଲେ । ସେତିକବେଳେ—

ସାଙ୍ଖସ୍ତୁ ବଚନଂ ଶ୍ରୁତ୍ୱା ଧର୍ମାର୍ଥ ସହିତଂ ହିତମ୍ ।
କୃଷ୍ଣା ଦାଶାର୍ହମାସୀନମବ୍ରବୀଚ୍ଛୋକକର୍ଷିତା ।।
ସୁତା ଦ୍ରୁପଦରାଜସ୍ୟ ସ୍ୱସିତାୟତମୂର୍ଧଜା ।
ସମ୍ପୂଜ୍ୟ ସହଦେବଞ୍ଚ ସାତ୍ୟକିଂଚ ମହାରଥମ୍ ।।
ଭୀମ ସେନଂଚ ସଶାନ୍ତଂ ଦୃଷ୍ଟ୍ୱା ପରମଦୁର୍ମନାଃ ।
ଅଶ୍ରୁପୂର୍ଣ୍ଣେକ୍ଷଣା ବାକ୍ୟମୁବାଚେଦଂ ଯଶସ୍ୱିନୀ ।।
କା ନୁ ସୀମନ୍ତିନୀ ମାଦୃକ୍ ପୃଥିବ୍ୟାମସ୍ତି କେଶବ ।।
ସୁତା ଦ୍ରୁପଦରାଜସ୍ୟ ବେଦୀମଧ୍ୟାତ୍ ସମୁତ୍ଥିତା ।
ଧୃଷ୍ଟଦ୍ୟୁମ୍ନସ୍ୟଭଗିନୀ ତବ କୃଷ୍ଣ ପ୍ରିୟାସଖୀ ।।
ଆଜମୀଢ଼କୁଳଂ ପ୍ରାପ୍ତା ସ୍ନୁଷା ପାଣ୍ଡୋର୍ମହାତ୍ମନଃ ।।
ମହିଷୀ ପାଣ୍ଡୁପୁତ୍ରାଣାଂ ପଂଚେନ୍ଦ୍ର ସମବର୍ଚସାମ୍ ।।
ସାହଂ କେଶଗ୍ରହଂ ପ୍ରାପ୍ତା ପରିକ୍ଲିଷ୍ଟା ସଭାଂ ଗତା ।
ପଶ୍ୟତାଂ ପାଣ୍ଡୁପୁତ୍ରାଣାଂ ତ୍ୱୟି ଜୀବତି କେଶବ
ଜୀବତ୍ସୁ ପାଣ୍ଡୁପୁତ୍ରେଷୁ ପାଞ୍ଚାଲେଷ୍ୱଥ ବୃଷ୍ଣିଷୁ ।
ଦାସୀଭୂତାସ୍ମି ପାପାନାଂ ସଭାମଧ୍ୟେ ବ୍ୟବସ୍ଥିତା ।।

× × ×

ଧିକ୍ ପାର୍ଥସ୍ୟ ଧନୁଷ୍ମତାଂ ଭୀମସେନସ୍ୟ ଧିକ୍ ବଳମ୍ ।
ଯତ୍ର ଦୁର୍ଯ୍ୟୋଧନଃ କୃଷ୍ଣ ମୁହୂର୍ତ୍ତମପି ଜୀବତି ।।
ଯଦି ତେଽହମନୁଗ୍ରାହ୍ୟ ଯଦି ତେଽସ୍ତି କୃପାମୟି ।
ଧାର୍ତରାଷ୍ଟ୍ରେଷୁ ବୈ କୋପଃ ସର୍ବଃ କୃଷ୍ଣ ବିଧୀୟତାମ୍ ।।
ଇତ୍ୟୁକ୍ତ୍ୱା ମୃଦୁସଂହାରଂ ବୃଜିନାଗ୍ରଂ ସୁଦର୍ଶନମ୍ ।
ସୁନୀଲମସିତାପାଙ୍ଗୀ ସର୍ବଗନ୍ଧାଧିବାସିତମ୍ ।।

ମନ୍ଦ ଲକ୍ଷଣ ସଂପନ୍ନଂ ମହାଭୁଜଗବର୍ଚସମ୍ ।
କେଶପକ୍ଷଂ ବରାରୋହା ଗୃହ୍ୟ ବାମେନ ପାଣିନା ।।
ପଦ୍ମାକ୍ଷୀ ପୁଣ୍ଡରୀକାକ୍ଷମୁପେତ୍ୟ ଗଜଗାମିନୀ
ଅଶ୍ରୁପୂର୍ଣ୍ଣେକ୍ଷଣା କୃଷ୍ଣା କୃଷ୍ଣଂ ବଚନମବ୍ରବୀତ୍ ।।
ଅୟନ୍ତୁ ପୁଣ୍ଡରୀକାକ୍ଷ ଦୁଃଶାସନ କରୋ ଧୃତଃ ।
ସ୍ମର୍ତ୍ତବ୍ୟଃ ସର୍ବକାର୍ଯ୍ୟେଷୁ ପରେଷାଂ ସନ୍ଧିମିଚ୍ଛତା ।।
ଯଦି ଭୀମାର୍ଜୁନୌ କୃଷ୍ଣ କୃପଣୌ ସନ୍ଧିକାମୁକୌ ।
ପିତା ମେ ଯୋତ୍ସ୍ୟତେ ବୃଦ୍ଧ ସହ ପୁତ୍ରୈର ମହାରଥୈଃ ।।
ପଞ୍ଚଚୈବ ମହାବୀର୍ଯ୍ୟାଃ ପୁତ୍ରା ମେ ମଧୁସୂଦନ ।
ଅଭିମନ୍ୟୁଂ ପୁରସ୍କୃତ୍ୟ ଯୋତ୍ସ୍ୟନ୍ତେ କୁରୁଭିଃ ସହ ।
ଦୁଃଶାସନ ଭୁଜଂ ଶ୍ୟାମଂ ସଂଛିନ୍ନଂ ପାଂଶୁଗୁଣ୍ଠିତମ୍ ।
ଯଦ୍ୟହନ୍ତୁ ନ ପଶ୍ୟାମି କା ଶାନ୍ତିର୍ହୃଦୟସ୍ୟ ମେ ।।
ତ୍ରୟୋଦଶ ହି ବର୍ଷାଣି ପ୍ରତୀକ୍ଷନ୍ତ୍ୟା ଗତାନି ମେ ।
ନିଧାୟ ହୃଦୟେ ମନ୍ୟୁଂ ପ୍ରଦୀପ୍ତମିବ ପାବକମ୍ ।।
ବିଦୀର୍ଯ୍ୟତେ ମେ ହୃଦୟଂ ଭୀମବାକ୍‌ଶଲ୍ୟପୀଡ଼ିତମ୍ ।
ଯୋଽୟମଦ୍ୟ ମହାବାହୁର୍ଧର୍ମମେବାନୁ ପଶ୍ୟତି ।।
ଇତ୍ୟୁକ୍ତ୍ୱା ବାଷ୍ପରୁଦ୍ଧେନ କଣ୍ଠେନାୟତଲୋଚନା ।
ରୁରୋଦ କୃଷ୍ଣା ସୋତ୍କଂପଂ ସସ୍ୱରଂ ବାଷ୍ପଗଦ୍‌ଗଦମ୍ ।। (୧୬)

'ଘୋର କୃଷ୍ଣ ଆୟତ କେଶା, ଯଶସ୍ୱିନୀ ଦ୍ରୁପଦନନ୍ଦିନୀ ଧର୍ମରାଜଙ୍କର ଧର୍ମାର୍ଥଯୁକ୍ତ ବାକ୍ୟ ଶ୍ରବଣ କରି ଓ ଭୀମସେନଙ୍କର ପ୍ରଶାନ୍ତଭାବ ଅବଲୋକନ କରି ଦୁଃଖରେ ଏକାନ୍ତ ଅଭିଭୂତ ହୋଇ ସହଦେବ ଓ ସାତ୍ୟକଙ୍କ କଥାକୁ ସ୍ୱାଗତ କରି ଅଶ୍ରୁପୂର୍ଣ୍ଣ ଚକ୍ଷୁରେ କୃଷ୍ଣଙ୍କୁ କହିଲେ, "ହେ କେଶବ, ଏଇ ଭୂମଣ୍ଡଳରେ ମୋଭଳି ନାରୀ ଆଉ କିଏ ଅଛି ? ମୁଁ ଦ୍ରୁପଦରାଜାଙ୍କର ଯଜ୍ଞବେଦିସମୁଦ୍‌ଭୂତା କନ୍ୟା, ଧୃଷ୍ଟଦ୍ୟୁମ୍ନଙ୍କ ଭଉଣୀ, ତୁମର ପ୍ରିୟସଙ୍ଗୀ, ଆଜମୀଢ଼କୁଳସମ୍ଭୂତ ପାଣ୍ଡୁରାଜାଙ୍କର ବୋହୂ ଓ ପଞ୍ଚଇନ୍ଦ୍ରଙ୍କ ପରି ପାଣ୍ଡବଗଣଙ୍କର ମହିଷୀ । ସେଇ ମୁଁ, ତୁମେ ଓ ପାଞ୍ଚାଳ ତଥା ବୃଷ୍ଣିଗଣ ଜୀବିତ ଥାଉ ଥାଉ ପାଣ୍ଡୁପୁତ୍ରଗଣଙ୍କ ସମକ୍ଷରେ

୧୬ । ମହାଭାରତ, ଉଦ୍ୟୋଗ ପର୍ବ

ସଭା ମଧ୍ୟରେ କେଶାକର୍ଷଣରେ ପରିକ୍ଲିଷ୍ଟା ହୋଇଛି, ପାପ ପରାୟଣ ଧାର୍ତ୍ତ- ରାଷ୍ଟ୍ରମାନଙ୍କର ଦାସୀ ହୋଇଛି । ପାର୍ଥଙ୍କ ଧନୁର୍ବିଦ୍ୟା ଓ ଭୀମସେନଙ୍କ ବଳକୁ ଧିକ୍ ଯେ ଦୁର୍ଯ୍ୟୋଧନ ଏବେବି ଜୀବିତ ଅଛି । ହେ କୃଷ୍ଣ, ଯଦି ମୋ ପ୍ରତି ତୁମର ଅନୁଗ୍ରହ ଓ କୃପା ଥାଏ, ତା ହେଲେ ଅଚିରେ ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କ ଉପରେ କ୍ରୋଧାଗ୍ନି ନିକ୍ଷେପ କର ।”

ଅସିତାପାଙ୍ଗୀ ଦ୍ରୁପଦନନ୍ଦିନୀ ଏଇ କଥା କହି କୁଟିଳାଗ୍ର, ସୁଦର୍ଶନ, ଘୋରକୃଷ୍ଣ ସର୍ବଗନ୍ଧାଧିବାସିତ, ସର୍ବଲକ୍ଷଣସଂପନ୍ନ, ମହାଭୁଜଗସଦୃଶ ବେଣୀବଦ୍ଧ କେଶକଳାପ ବାମହସ୍ତରେ ଧାରଣ କରି ଗଜଗମନରେ ପୁଣ୍ଡରୀକାକ୍ଷ କୃଷ୍ଣଙ୍କ ନିକଟରେ ଉପସ୍ଥିତ ହୋଇ ଅଶ୍ରୁପୂର୍ଣ୍ଣ ନେତ୍ରରେ ପୁନର୍ବାରକହିବାକୁ ଲାଗିଲେ, “ହେ ପୁଣ୍ଡରୀକାକ୍ଷ, ଯଦି ଶତ୍ରୁଗଣ ସନ୍ଧି- ସ୍ଥାପନ ପାଇଁ ଇଚ୍ଛାପ୍ରକାଶ କରନ୍ତି, ତେବେ ଦୁଃଶାସନକରୋଦ୍ଧୃତ ମୋର ଏଇ କେଶକଳାପକୁ ସ୍ମରଣ କରିବେ । ହେ କୃଷ୍ଣ, ଯଦି ଭୀମାର୍ଜୁନ ଦୀନ ପରି ସନ୍ଧିକାମୀ ହେବେ, ତେବେ ମୋର ବୃଦ୍ଧ ପିତା ମହାରଥ ପୁତ୍ରଗଣଙ୍କ ସମଭିବ୍ୟାହାରରେ ଶତ୍ରୁଗଣଙ୍କ ସହିତ ସଂଗ୍ରାମ କରିବେ । ମୋର ମହାବଳପରାକ୍ରାନ୍ତ ପଞ୍ଚପୁତ୍ର ଅଭିମନ୍ୟୁଙ୍କୁ ପୁରସ୍କୃତ କରି କୌରବଗଣଙ୍କୁ ସଂହାର କରିବେ । ଦୁରାତ୍ମା ଦୁଃଶାସନର ଶ୍ୟାମଳ ବାହୁକୁ ଛିନ୍ନ, ପାଂଶୁଗୁଣ୍ଠିତ ନ ଦେଖିଲେ ମୋ ହୃଦୟରେ ଶାନ୍ତି କାହିଁ ? ମୁଁ ହୃଦୟରେ ପ୍ରଦୀପ୍ତ ପାବକ ପରି କ୍ରୋଧକୁ ସ୍ଥାପନ କରି ତେର ବର୍ଷଧରି ପ୍ରତୀକ୍ଷା କରିଅଛି । ଆଜି ଧର୍ମପଥାବଲମ୍ବୀ ବୃକୋଦରଙ୍କ ବାକ୍ୟଶରରେ ମୋ ହୃଦୟ ବିଦୀର୍ଣ୍ଣ ହୋଇଯାଉଛି ।” ଆୟତଲୋଚନା କୃଷ୍ଣା ଏଇ କଥା କହି ବାଷ୍ପଗଦ୍‌ଗଦସ୍ୱରରେ, କମ୍ପିତ-କଳେବର ହୋଇ କ୍ରନ୍ଦନ କରିବାକୁ ଲାଗିଲେ ।

ବ୍ୟାସଦେବଙ୍କର ଏଇ ମହାକାବ୍ୟଖଣ୍ଡର କାବ୍ୟତ୍ୱ ସମ୍ପର୍କରେ କୌଣସି କାବ୍ୟରସିକଙ୍କୁ ସଚେତନ କରାଇବାକୁ ହେବନି । ତାଙ୍କ କାବ୍ୟର ଦ୍ୟୁତି ମଧ୍ୟାହ୍ନ ସୂର୍ଯ୍ୟପରି ସ୍ୱପ୍ରକାଶ । ବର୍ତ୍ତମାନ ଆଳଙ୍କାରିକ- ମାନଙ୍କର କାବ୍ୟବିଶ୍ଳେଷଣ ଏଥିରେ ପ୍ରୟୋଗ କରି ଦେଖାଯାଉ ।

ଆଳଙ୍କାରିକମାନେ କହିବେ, ଏ କାବ୍ୟର ଆତ୍ମା ହେଉଛି କେତୋଟି ରସ ମାତ୍ର; କିନ୍ତୁ କାବ୍ୟଟି ‘ନାନାରସନିବଦ୍ଧ’ ହେଲେ ମଧ୍ୟ

ଗୋଟିଏ ରସ ହିଁ ଏଥିରେ ପ୍ରଧାନ । ତାହା ରୌଦ୍ରରସ । ରୌଦ୍ରରସର ଲୌକିକ ଭାବ ଉପାଦାନ ହେଉଛି କ୍ରୋଧ । ବାସ୍ତବଜୀବନରେ କ୍ରୋଧ ମନୋହାରୀବସ୍ତୁ ନୁହେଁ । କିନ୍ତୁ ମହାକବିଙ୍କର ପ୍ରତିଭାର ମାୟା ଦ୍ରୌପଦୀଙ୍କ କ୍ରୋଧକୁ ଅପୂର୍ବ ରସ ମୂର୍ତ୍ତିରେ ପରିଣତ କରିଛି । ରୌଦ୍ରରସର ବିଭାବ ହେଉଛି ଲୌକିକ ଜଗତରେ ଯେଉଁଠି କ୍ରୋଧ ଉଦ୍ଦୀପ୍ତ ହୁଏ ତାହାର ଶବ୍ଦସମର୍ପିତ ହୃଦୟସମ୍ବାଦୀ ଚିତ୍ର । ଦୁର୍ଯ୍ୟୋଧନ, ଦୁଃଶାସନ ଓ ସେମାନଙ୍କର ନିଦାରୁଣ ଅପମାନର ସେଇ ଚିତ୍ର ଏଠାରେ ସାମାନ୍ୟ ରେଖାଙ୍କିତ ଭାବରେ ଇଙ୍ଗିତ କରାଯାଇଛି ମାତ୍ର । କାରଣ ସଭାପର୍ବରେ ତା'ର ଅତ୍ୟୁଗ୍ର, ଉଜ୍ଜ୍ୱଳ ଛବି ସହୃଦୟ ପାଠକର ଚିତ୍ତକୁ ପୂର୍ବରୁ ହିଁ କ୍ରୋଧର ରୌଦ୍ର-ରାଗରେ ରକ୍ତିମ କରିରଖିଛି ।

କିନ୍ତୁ ରୌଦ୍ରରସ ଯଦି ଏ କାବ୍ୟର ଏକମାତ୍ର ରସ ହୁଅନ୍ତା, ତେବେ କାବ୍ୟର ଏକଶତାଂଶ କାବ୍ୟତ୍ୱ ରହନ୍ତା ନାହିଁ । ଆଳଙ୍କାରିକମାନେ କହିବେ, କେତୋଟି ସଞ୍ଚାରୀ ଏହାର ରୌଦ୍ରରସକୁ ଆଶ୍ଚର୍ଯ୍ୟ ରମଣୀୟତା ଓ ପରମ ଉତ୍କର୍ଷ ପ୍ରଦାନ କରିଛି । ନବରସ ମଧ୍ୟରୁ ଦୁଇଟି ପ୍ରଧାନ ରସ—ବୀର ଓ କରୁଣ ଓ କେତୋଟି ବ୍ୟଭିଚାରୀ—ବିଷାଦ, ଗର୍ବ, ଦୈନ୍ୟ —ରୌଦ୍ର ର ରକ୍ତରାଗକୁ ଅପୂର୍ବ ବର୍ଣ୍ଣଚ୍ଛଟାରେ ଉଦ୍‌ଭାସିତ କରିଛି ।

ତେଜସ୍ୱିନୀ ଦ୍ରୌପଦୀଙ୍କର ଶୋକକର୍ଷିତ, ଅଶ୍ରୁଲୋଚନ ବିଷାଦ ମୂର୍ତ୍ତିଦେଇ କାବ୍ୟର ଆରମ୍ଭ ହେଲା । ତା'ପରେ ଦ୍ରୌପଦୀଙ୍କର ପିତୃକୁଳ, ପତିକୁଳ ଓ ମିତ୍ରସୌଭାଗ୍ୟ ପାଇଁ ଯେଉଁ ଗର୍ବ, ତାହା ଶୋକର କରୁଣ ରସକୁ ହିଁ ଗଭୀର କରିଛି । ଆଉ ଶୋକର ଅନ୍ତରରେ କ୍ରୋଧାନ୍ୱିତ ରୌଦ୍ରର ରକ୍ତିମ ଦ୍ୟୁତି କରୁଣରସର ଅଶ୍ରୁଜଳରେ ରକ୍ତର ଇନ୍ଦ୍ରଧନୁ ସୃଜିଛି । କିନ୍ତୁ ପୁଣି ମୁହୂର୍ତ୍ତକରେ ରୌଦ୍ରର ଉଦ୍ଧତ ରାଗ ଦୀନତାର ପାଣ୍ଡୁର ଛାୟାରେ ମିଳାଇ ଯାଇଛି ।

ମହାଭାରତକାର ଯେଉଁ ଦୁଇଟି ଶ୍ଳୋକରେ ଦ୍ରୌପଦୀଙ୍କର ମହାଭୁଜଙ୍ଗୀପରି ଦୀର୍ଘ ବେଣୀର ଛବି ଆଙ୍କିଛନ୍ତି, ସେଇ ବେଣୀ, ଯାହା ଅଷ୍ଟାଦଶ ଅକ୍ଷୌହିଣୀ କ୍ଷତ୍ରିୟଙ୍କ ରକ୍ତରେ ପୃଥିବୀ ରଞ୍ଜିତ କରିବ, ଆଳଙ୍କାରିକମାନେ ତାକୁ ହିଁ କହନ୍ତି କାବ୍ୟର ବିଭାବ । ଏ କାବ୍ୟର

ସମସ୍ତ ରସର ଅବଲମ୍ବନ ହୋଇଛନ୍ତି ଦ୍ରୌପଦୀ । ସୁତରାଂ ସେସବୁ ରସର ଅନୁଗତ ଦ୍ରୌପଦୀଙ୍କର ଓ ତାଙ୍କ ଚେଷ୍ଟାର ଛବି—

କେଶପକ୍ଷଂ ବିଧାରେହା ଗୃହ୍ୟ ବାମେନ ପାଣିନା
ପଦ୍ମାକ୍ଷୀ ପୁଣ୍ଡରୀକାକ୍ଷ ମୁପେତ୍ୟ ଗଜଗାମିନୀ ॥

ଏହା କାବ୍ୟର ବିଭବ । କହିବା ବାହୁଲ୍ୟ, ଏପରି ବିଭାବ ମହାକବିଙ୍କଠି ହିଁ ସମ୍ଭବ । ଅନ୍ୟ କବିଙ୍କର ହୁଏତ ଏପରି ଛବି କଳ୍ପନାରେ ଆସି ନଥାନ୍ତା, ନାହିଁ ତ ବେଣୀର ବର୍ଣ୍ଣନାରେ ଶ୍ଳୋକ ପରେ ଶ୍ଳୋକ ଗୁନ୍ଥିଥାନ୍ତା ।

ଏହାପରେ ଦ୍ରୌପଦୀଙ୍କର ବାକ୍ୟ କରୁଣ ଓ ରୌଦ୍ରର ଏକ ଅପରୂପ ମିଶ୍ରଣ ଘେନି ଆରମ୍ଭ ହୋଇଛି । "ହେ ପୁଣ୍ଡରୀକାକ୍ଷ, ଯଦି କେବେ ସନ୍ଧି କଥା ମନରେ ଆସେ, ଦୁଃଶାସନକରୋଦ୍ଧୃତ ମୋର ଏହି ବେଣୀକୁ ମନେପକାଅ ।" ଏହି ମିଶ୍ରରସ ବୀରପିତା, ବୀରଭ୍ରାତା ଓ ବୀରପୁତ୍ରବଧୂ କ୍ଷତ୍ରିୟନାରୀର ବୀରରସର ତାପରେ ଉତ୍ତପ୍ତ ହୋଇ ରୌଦ୍ରର ବହ୍ନିରାଗରେ ଦପ୍ କରି ଜଳିଉଠିଛି । ଅଭିମାନ ଓ ଶୋକର ଅଶ୍ରୁଜଳରେ କାବ୍ୟ ଶେଷ ହେଲେ ବି ସେ କରୁଣରସ ମୁଖ୍ୟ ରୌଦ୍ର-ରସକୁ ନିର୍ବାପିତ ନକରି ତାକୁ ପରିପୁଷ୍ଟ ଓ ସ୍ଥାୟୀ କରିଛି । ଯେଉଁ ଶୋକର ଛବିରେ କାବ୍ୟ ସମାପ୍ତ, ସେ ଛବି କେତୋଟି ଅନୁଭାବ ମୁଖରେ ଅଙ୍କିତ । ଲୌକିକ ଶୋକ ଯାହା ମାଧ୍ୟମରେ ବାହାରେ ପ୍ରକାଶିତ ହୁଏତ ସେହି ଛବି ତାହାର କାବ୍ୟରେ ସମର୍ପିତ ରସମୂର୍ତ୍ତି ।

ଏହି କାବ୍ୟରେ ରସର ବିବରଣ ଏବେବି ଶେଷ ହୋଇନାହିଁ । କାରଣ ଏ ରୌଦ୍ର, ବୀର, କରୁଣ ସବୁ ରସର ଅନ୍ତରାଳରେ ଆଉ ଏକ ରସମୂର୍ତ୍ତି ମୂର୍ତ୍ତ ହେଉଛି । ଏ କାବ୍ୟର କ୍ରୋଧ, ବୀରତ୍ୱ, ଶୋକ—ସମସ୍ତ ଯେ ତେଜସ୍ୱିନୀ ସୁନ୍ଦରୀ ନାରୀର କ୍ରୋଧ, ବୀର୍ଯ୍ୟ ଓ ଶୋକ, କବି ଏକଥା ବିସ୍ମୃତ ହେବାକୁ ଦେଇନାହାନ୍ତି । ସମଗ୍ର କାବ୍ୟ ଭିତରେ ଏ ସ୍ମୃତିର ଉଦ୍‌ବୋଧ ବିସ୍ତାରି ରଖିଛନ୍ତି । ମଧୁର ବା ଶୃଙ୍ଗାର ରସର ବିଭାବ ସୁନ୍ଦରୀ ନାରୀର ସଂସ୍ପର୍ଶରେ ରୌଦ୍ର, ବୀର, କରୁଣ—ସମସ୍ତ ରସ ଉପରେ ଏକ ମାଧୁର୍ଯ୍ୟର ରଶ୍ମିପାତ କରିଛି ।

ଏ କାବ୍ୟରେ ରୌଦ୍ର ଓ ବୀରରସ ପାଖାପାଖି ରହିଛି । ଟିକିଏ ଅବାନ୍ତର ହେଲେ ବି ଏ ଦୁଇର ପ୍ରଭେଦଟିକୁ ସ୍ପଷ୍ଟକରି ଦେଖାଇବା

ବୋଧହୁଏ ନିରର୍ଥକ ନୁହେଁ । ରୌଦ୍ରରସର ଭାବର ଉପାଦାନ ହେଉଛି କ୍ରୋଧ, କିନ୍ତୁ ବୀରରସର ଭାବର ଉପାଦାନ ହେଉଛି ଉତ୍ସାହ । ଯାହାର ବୀରରସ ଯେ ହାସ୍ୟାସ୍ପଦ, ତା'ର କାରଣ ଯାହାବାଲି ରୌଦ୍ରରସକୁ ବୀରରସ ବୋଲି ଭୁଲକରେ । ତା'ର ମନର ଧାରଣା ଯେ, ବୀରରସର ଉପାଦାନ କ୍ରୋଧ । "ଯଦି ତୋର ଡାକ ଶୁଣେ କେଉ ନା ଆସେ, ତବେ ଏକଲା ଚଲରେ"—ଆଲଙ୍କାରିକମାନଙ୍କ ମତରେ ବୀରରସର ଉତ୍କୃଷ୍ଟ ଉଦାହରଣ । ଆଉ "ସ୍ୱାଧୀନତାହୀନତାୟ୍ କେ ବାଁଚିତେ ଚାୟ୍ରେ, କେ ବାଁଚିତେ ଚାୟ୍ ।"—କବି ବୀରରସର କବିତା ମନେକରି ଲେଖିଲେ ବି ଆଲଙ୍କାରିକମାନେ କେବେ ବୀରରସ କହିବାକୁ ରାଜି ହୋଇନଥାନ୍ତେ । କାରଣ, ଏହା 'ଉତ୍ସାହ'ର ରସମୂର୍ତ୍ତି ନୁହେଁ ।

ଆଲଙ୍କାରିକମାନଙ୍କର ଏଇ କାବ୍ୟ ବିଶ୍ଳେଷଣ ଆଧୁନିକ ଗଠନମୂଳକ ସମାଲୋଚନାରେ (Constructive criticism) ଅଭ୍ୟସ୍ତ ପାଠକଙ୍କ ମନକୁ ପାଇବ ନାହିଁ । କିନ୍ତୁ ଆଲଙ୍କାରିକଗଣ କାବ୍ୟ ଅନୁସାରେ କବିଉ ନିର୍ଣ୍ଣୟର ପକ୍ଷପାତୀ ନଥିଲେ । କାବ୍ୟର ଗାଢ଼ରଙ୍ଗକୁ ସମାଲୋଚନାର ଫିକା ରଙ୍ଗରେ ଆଙ୍କିଲେ କାହାର କି ହିତ ହୁଏ, ତାହା ସେମାନଙ୍କ ବୁଦ୍ଧିର ବାହାରେ ଥିଲା । ଅଧିକାଂଶ Constructive criticism ହୁଏତ କାବ୍ୟର ରସସହିତ ରସହୀନ ବାକ୍ୟର ଜଳ ମିଶାଇ ପତଳା କରି ପାଠକଙ୍କ ପାଖରେ ପହଞ୍ଚାଇବା, ତା' ନହେଲେ କାବ୍ୟର Emotionକୁ ସମାଲୋଚନାର Sentimentalismର ଗୋଟିଏ ଉପଲକ୍ଷ କରିବା । ଆଲଙ୍କାରିକମାନେ ବୁଝିଥିଲେ, କାବ୍ୟର ତତ୍ତ୍ୱବିଶ୍ଳେଷଣ ରସଜ୍ଞବ୍ୟକ୍ତିର ବୁଦ୍ଧିର ବ୍ୟାପାର । କାବ୍ୟର ରସକୁ ଦରକାର ହେଲେ ପତଳା କରି ପାଠକକୁ ଢୋକେଇଦେବା ତାହାର ଉଦ୍ଦେଶ୍ୟ ନୁହେଁ । କାରଣ, ସେହି କାର୍ଯ୍ୟରେ କିଏ କେବେ ସଫଳ ହୋଇପାରିବେ ନାହିଁ । ଆଲଙ୍କାରିକମାନେ ଜାଣିଥିଲେ, କାବ୍ୟରରସ ଆସ୍ୱାଦନ ଜନଗଣ କାବ୍ୟପାଠ ମାଧ୍ୟମରେ ହିଁ କରିପାରିବେ । ସମାଲୋଚକର 'କବିତ୍ୱ' ନିର୍ଦ୍ଧାରଣ ମାଧ୍ୟମରେ କାବ୍ୟରସ ଆସ୍ୱାଦନର ଆଧୁନିକ ତତ୍ତ୍ୱ ସେମାନଙ୍କର ଜଣାନଥିଲା । ସମାଲୋଚନାର କବିତ୍ୱ ମନରେ କାବ୍ୟରସ ସଞ୍ଚାର କରିପାରେ ଯଦି ସମାଲୋଚକ ଏକାଧାରରେ ସମାଲୋଚକ ଓ କବି ହୁଅନ୍ତି । ଏ ଯୋଗ ଦୁର୍ଲଭ । ଆଲଙ୍କାରିକମାନେ ଜାଣିଥିଲେ, ସେମାନେ କେବଳ କାବ୍ୟତତ୍ତ୍ୱବିତ୍ ସହୃଦୟ ମାତ୍ର । ●

# କଥା

ତତ୍ତ୍ୱଜ୍ଞମାନେ କହିଛନ୍ତି, ଆତ୍ମାକୁ ଜାଣିବାକୁ ହେଲେ ନେତି ନେତି ଜରି ଆରମ୍ଭ କରିବାକୁ ହୁଏ । ବୁଝିବାକୁ ହୁଏ ଆତ୍ମା ଦେହ ନୁହେଁ, ପ୍ରାଣ ନୁହେଁ, ମନ ନୁହେଁ, ବିଜ୍ଞାନ ନୁହେଁ । ତେବେ ଯାଇ ଆତ୍ମାର ପ୍ରକୃତ ସ୍ୱରୂପ ପ୍ରତିଭାତ ହୁଏ । କାବ୍ୟାତ୍ମାର ସନ୍ଧାନରେ ଆଳଙ୍କାରିକମାନେ ମଧ୍ୟ ଏଇ ନେତିର ପଥ ଧରିଛନ୍ତି । କାବ୍ୟର ଆତ୍ମା ତା'ର ଶବ୍ଦାର୍ଥମୟ କଥା-ଶରୀର ନୁହେଁ, ତାହାର ବାଚ୍ୟର ବିଶିଷ୍ଟତା ନୁହେଁ, ତାହାର ରଚନା-ରୀତିର ଚମତ୍କାରିତା ନୁହେଁ, ଅଳଙ୍କାରର ସୌକୁମାର୍ଯ୍ୟ ନୁହେଁ । କାବ୍ୟର ଆତ୍ମା ଏସବୁର ଅତିରିକ୍ତ ଆନନ୍ଦସ୍ୱରୂପ ବସ୍ତୁ, ଅର୍ଥାତ୍ ରସ । କିନ୍ତୁ ଏ ଆତ୍ମା ନିର୍ଗୁଣ ନିରୁପାଧିକ ଆତ୍ମା ନୁହେଁ, ଯେଉଁଠି ପହଞ୍ଚିଗଲେ (ନାନ୍ୟତ୍ ପଶ୍ୟତି, ନାନ୍ୟତ୍ ଶୃଣୋତି, ନାନ୍ୟତ୍ ବିଜାନାତି) ଦେଖିବାର, ଶୁଣିବାର କି ଜାଣିବାର ଆଉ କିଛି ରହେନାହିଁ, ଦଗ୍‌ଧକାଷ୍ଠ ଅଗ୍ନି ପରି ସବୁ ନିର୍ବାଣପ୍ରାପ୍ତ ହୁଏ । କାବ୍ୟର ରସ ସେହି ସଗୁଣ ସକ୍ରିୟ ଆତ୍ମା (ସର୍ବାଣି ରୂପାଣି ବିଚିତ୍ୟ ଧୀରେ, ନାମାନି କୃତ୍ୱାଭିବଦନ୍, ଯଦାସ୍ତେ), ଯାହା ନାନା ରୂପର ସୃଷ୍ଟି କରେ ତାହାକୁ ନାମର ଗଣ୍ଡିରେ ବାନ୍ଧି, ନିଜର ସେହି ସୃଷ୍ଟି ମଧ୍ୟରେ ହିଁ ଆବିଷ୍ଟ ହୋଇ ବିରାଜ କରେ । କବିର କର୍ମ ପାଠକର ଚିତ୍ତରେ ରସର ଉଦ୍‌ବୋଧନ । କିନ୍ତୁ ରସ କବିର ମନଠାରୁ ପାଠକର ମନରେ ସିଧା ଉପାୟ ନିରପେକ୍ଷ ସଞ୍ଚାରିତ ହୁଏନାହିଁ । ଶବ୍ଦ ଓ ଅର୍ଥର, ବାଚକ ଓ ବାଚ୍ୟର ଉପାୟକୁ ଆଶ୍ରୟକରି କବି ଏଇ ଉଦ୍ଦେଶ୍ୟ ସାଧନ କରନ୍ତି । ସୁତରାଂ ଯଦିଓ କବିର ଚରମ ଲକ୍ଷ୍ୟ ପାଠକର ମନର ଭାବକୁ ରସରେ ରୂପାନ୍ତରିତ କରିବା, ତଥାପି ତାହାର କାବ୍ୟସୃଷ୍ଟି ହେଉଛି ଏହି ଉପାୟର ସୃଷ୍ଟି ।

ଆଲୋକାର୍ଥୀ ଯଥା ଦୀପଶିଖାୟାଂ ଯତ୍ନବାନ୍ ଜନଃ ।
ତଦୁପାୟତୟା ତଦ୍‌ବଦର୍ଥେ ବାଚ୍ୟେ ତଦାଦୃତଃ ।। (୧)

---

୧ । ଧ୍ୱନ୍ୟାଲୋକ, ୧/୯

'ଲୋକେ ଆଲୁଅ ଚାହାନ୍ତି, କିନ୍ତୁ ତାଙ୍କୁ ଜଳାଇବାକୁ ହୁଏ ଦୀପଶିଖା । କବିର ଲକ୍ଷ୍ୟ ରସ, କିନ୍ତୁ ତାକୁ ସୃଷ୍ଟି କରିବାକୁ ହୁଏ କାବ୍ୟର ଶବ୍ଦାର୍ଥମୟ କଥାବସ୍ତୁ ।' ଏଇ କଥାବସ୍ତୁ ଯଦି ସହୃଦୟ ପାଠକ ମନରେ ଅଭିପ୍ରେତ ରସସଞ୍ଚାରର ଉପଯୋଗୀ ହୁଏ, ତେବେ ଯାଇ କବିର କାର୍ଯ୍ୟ ଶେଷ ହେଲା । ଏହାଠାରୁ ଅତିରିକ୍ତ ତାଙ୍କର ସାଧ୍ୟର ଅତୀତ । କାରଣ, କାବ୍ୟ କୌଣସି ପାଠକବିଶେଷର ମନରେ ରସଉଦ୍ରେକ କରିବ କି ନାହିଁ, ତାହା କେବଳ କାବ୍ୟ ଉପରେ ନିର୍ଭର କରେ ନାହିଁ, ପାଠକର ମନ ଉପରେ ମଧ୍ୟ ନିର୍ଭର କରେ । କବି ଯେଉଁ ଭାବକୁ ରସମୂର୍ତ୍ତି ଦେବାକୁ ଚାହାନ୍ତି, ଯଦି ପାଠକର ମନ ସେ ଭାବ ସମ୍ବନ୍ଧରେ କିଛି ଅଂଶ କବିମନର ସମଧର୍ମୀ ନହୁଏ, ତେବେ ସେ ପାଠକ ନିକଟରେ କାବ୍ୟ ବ୍ୟର୍ଥ । ଏହି କାରଣରୁ କବି ବିରଞ୍ଚି ଅରସିକଠାରେ ରସନିବେଦନର ଦୁଃସହ ଦୁଃଖରୁ ଇଷ୍ଟଦେବତା ନିକଟରେ ମୁକ୍ତି ଚାହିଁଛନ୍ତି । ଆଉ ଭବଭୂତି— ଅନନ୍ତକାଳ ଓ ବିପୁଳ ପୃଥିବୀରେ ସମାନଧର୍ମା ପାଠକ ନିକଟରେ ଦିନେ ନା ଦିନେ କାବ୍ୟ ପହଞ୍ଚିବ, ଏହି ଭରସାରେ ଆଶ୍ୱସ୍ତ ହୋଇଛନ୍ତି । କାବ୍ୟରେ କାହିଁକି ସବୁ ଲୋକଙ୍କ ମନରେ ରସର ଅଭିବ୍ୟକ୍ତି ହୁଏନାହିଁ, ଆଲଙ୍କାରିକମାନେ କହନ୍ତି, ତାହାର କାରଣ ଭାବର ବାସନାର ଅଭାବ । —ନ ଜାୟତେ ତଦା ସ୍ୱାଦୋ ବିନା ରତ୍ୟାଦି ବାସନାମ୍ । (୨) ବାସନା ହେଉଛି ଅନୁଭୂତ ଭାବ ବା ଜ୍ଞାନର ସଂସ୍କାର ଲେଶ, ଯାହାକୁ ଆଶ୍ରୟ କରି ପୂର୍ବାନୁଭୂତିର ସ୍ମୃତି ମନରେ ଜାଗ୍ରତ ହୁଏ । ଏଇ ବାସନା ଅଛି ବୋଲି ହିଁ କାବ୍ୟର ଭାବଚିତ୍ର ମନରେ ରସର ସଞ୍ଚାର କରେ । ଆଉ ଏହି ବାସନା ନାହିଁ ବୋଲି ବାଳକ ପାଖରେ ଚଣ୍ଡୀଦାସଙ୍କ କାବ୍ୟ ନିଷ୍ଫଳ । କାବ୍ୟ ଭାବକୁ ରସରେ ପରିଣତ କରିବାକୁ ଚାହେଁ, ଯେଉଁ ପାଠକ ମନରେ ତାହାର ବାସନା ନାହିଁ, ତାହାର ବୟସ ଯେତେ ହେଉନା କାହିଁକି କାବ୍ୟ ନିକଟରେ ସେ ଶିଶୁ ; ଅର୍ଥାତ୍ ସେହି କାବ୍ୟ ତାହାପାଇଁ ଉଦ୍ଦିଷ୍ଟ ନୁହେଁ । ଭାବର ଅନୁଭୂତି ଅଛି ସୁତରାଂ ବାସନା ଅଛି, କିନ୍ତୁ ତା'ର ରସର ଆସ୍ୱାଦନ ନାହିଁ । —ଏପ୍ରକାର ଲୋକ ଅନେକ ଅଛନ୍ତି । ଆଲଙ୍କାରିକମାନେ କହନ୍ତି, ତାହାର କାରଣ 'ପ୍ରାକ୍ତନ', ଅର୍ଥାତ୍

---

୨ । ସାହିତ୍ୟଦର୍ପଣ

ଟବଜନ୍ମର କର୍ମଫଳ । 'ରସାସ୍ୱାଦ ଶକ୍ତିର ସ୍ୱାଭାବିକ ଅଭାବ' କହିଲେ ଭାଷାଟା ଆଧୁନିକ ଶୁଣାଯାଏ ସତ, କିନ୍ତୁ ଅର୍ଥ ଗୋଟିଏ ଥାଏ ।

କାବ୍ୟର ଲକ୍ଷ୍ୟ ରସ । ଶବ୍ଦ, ବାଚ୍ୟ, ରୀତି, ଅଳଙ୍କାର, ଛନ୍ଦ—ତାର ଉପାୟ । କିନ୍ତୁ ଏଇ ଉଦ୍ଦେଶ୍ୟ ଓ ଉପାୟର ଯେ ବିଶ୍ଳେଷଣ, ତାହା ହେଉଛି ବୁଦ୍ଧିର କାବ୍ୟ ପରୀକ୍ଷାର ବିଶ୍ଳେଷଣ । କବିର କାବ୍ୟ ସୃଷ୍ଟିରେ ଓ ସହୃଦୟର କାବ୍ୟ ଆସ୍ୱାଦନରେ, ରସବ୍ୟତୀତ ଏସବୁ ଉପାୟର ସ୍ୱତନ୍ତ୍ର ପରିକଳ୍ପନା କି ଆସ୍ୱାଦନ ନାହିଁ । କାରଣ, କାବ୍ୟର ବାଚ୍ୟ, ରୀତି, ଛନ୍ଦ ଓ ଅଳଙ୍କାର—ଏଇସବୁ ଭିନ୍ନ ଭିନ୍ନ ବସ୍ତୁ ଏକତ୍ର ହୋଇ କାବ୍ୟର ରସ ସୃଷ୍ଟି କରନ୍ତି ନାହିଁ । ରସ ହିଁ ନିଜକୁ ମୂର୍ତ୍ତିକରି ଗଢ଼ିବାର ଆବେଗରେ କାବ୍ୟର ଏଇସବୁ ଅଙ୍ଗର ସୃଷ୍ଟି କରିଥାଏ । ଯେପରି ନାନା ଅଙ୍ଗ-ପ୍ରତ୍ୟଙ୍ଗର ମିଳନରେ ଜୀବଶରୀରରେ ପ୍ରାଣର ସୃଷ୍ଟି ହୋଇନି, ପ୍ରାଣଶକ୍ତି ହିଁ ଅଙ୍ଗପ୍ରତ୍ୟଙ୍ଗ ସୃଷ୍ଟି କରି ନିଜକୁ ତା' ମଧ୍ୟରେ ପ୍ରକାଶ କରିଛି । ସୁତରାଂ କାବ୍ୟର ଏସବୁ ଅଙ୍ଗ ତା'ର ରସର ବହିଃରଙ୍ଗ ନୁହେଁ, ରସର ଅଙ୍ଗ ମାତ୍ର । "ତସ୍ମାନ୍ନ ତେଷାଂ ବହିରଙ୍ଗତ୍ୱଂ ରସାଭିବ୍ୟକ୍ତୌ ।" (୩) ଅର୍ଥାତ୍ ରସବାଦୀ ଆଳଙ୍କାରିକମାନେ ହେଉଛନ୍ତି କାବ୍ୟମୀମାଂସାର ଅଚିନ୍ତ୍ୟ ଭେଦାଭେଦବାଦୀ । ଚେତନାଚେତନ ଏହି ଜଗତ ପରମାତ୍ମା ବ୍ରହ୍ମ ନୁହେଁ, କିନ୍ତୁ ତାଠାରୁ ଭିନ୍ନ ମଧ୍ୟ ନୁହେଁ । କାବ୍ୟର ଏହିସବୁ ଅଙ୍ଗ କାବ୍ୟର ଆତ୍ମା, ରସ ନୁହେଁ, କିନ୍ତୁ ରସଠାରୁ ଭିନ୍ନ ମଧ୍ୟ ନୁହେଁ । କାରଣ, କାବ୍ୟର ରସ ଏଇସବୁ କାବ୍ୟାଙ୍ଗଠାରୁ ପୃଥକ୍, ବ୍ୟପଦେଶାନର୍ହ; ପୃଥକ୍‌ଭାବେ ନିର୍ଦ୍ଦେଶର ଅଯୋଗ୍ୟ । ଏଇ ଆପାତ ବିରୁଦ୍ଧ ଭେଦାଭେଦ ସମ୍ବନ୍ଧ କିପରି ସମ୍ଭବ ହୁଏ, ତାହା ତର୍କଦ୍ୱାରା ପ୍ରତିଷ୍ଠା କରିବାର ବିଷୟ ନୁହେଁ, ତତ୍ତ୍ୱଦର୍ଶୀ ଓ କାବ୍ୟରସିକର ପ୍ରତ୍ୟକ୍ଷ ଅନୁଭୂତିର ବସ୍ତୁ ।

ରସବାଦୀମାନଙ୍କର ଏହି ସିଦ୍ଧାନ୍ତ ଯେ କାବ୍ୟର ଭୂମିଛାଡ଼ି ତତ୍ତ୍ୱ ଆକାଶରେ ହଜିଯିବା ନୁହେଁ, ତାଙ୍କୁ ପ୍ରମାଣ କରିବାକୁ ଯାଇ ସେମାନେ କହନ୍ତି, ମହାକବିମାନଙ୍କର ଶ୍ରେଷ୍ଠକାବ୍ୟ ମାନେ ଦେଖାଯିବ ଯେ, ତାହାର ଭାଷା କି ଅଳଙ୍କାର 'ଅପୃଥଗ୍ ଯତ୍ନ-ନିର୍ବର୍ତ୍ତ୍ୟ', ଅର୍ଥାତ୍ ତାହା

୩ । ଧ୍ୱନ୍ୟାଲୋକ, ୨/୧୭ ବୃତ୍ତି

ଯାଇଁ କବିର କୌଣସି ପୃଥକ୍ ଯତ୍ନ କରିବାକୁ ହୁଏନାହିଁ । (୪)କାରଣ—

ରସବନ୍ତି ହି ବସ୍ତୂନି ସାଲଙ୍କାରାଣି କାନିଚିତ୍
ଏକେନୈବ ପ୍ରଯତ୍ନେନ ନିବର୍ତ୍ତ୍ୟନ୍ତେ ମହାକବେଃ । (୫)

କାବ୍ୟର ରସବସ୍ତୁ ଓ ତା'ର ଅଳଙ୍କାର ମହାକବିଙ୍କର ପ୍ରଯତ୍ନରେ ହିଁ ସିଦ୍ଧ ହୁଏ, କାରଣ ଯଦିଓ ବିଶ୍ଳେଷଣ ବୁଦ୍ଧି ନିକଟରେ ସେମାନଙ୍କର ରଚନାଭଙ୍ଗି ଓ ଅଳଙ୍କାର ପ୍ରୟୋଗର କୌଶଳ ନିରୂପଣ ଦୁର୍ଘଟ ଓ ବିସ୍ମୟାବହ, କିନ୍ତୁ ପ୍ରତିଭାବାନ୍ କବିର ରସସମାହିତ ଚିତ୍ତରୁ ତାହା ଏକାଠି ବାହାରିଆସେ—

ଅଳଙ୍କାରାନ୍ତରାଣି ହି ନିରୂପ୍ୟମାନ ଦୁର୍ଘଟନାନ୍ୟପି ରସସମାହିତ-
ଚେତସଃ ।

ପ୍ରତିଭାନବତଃ କବେରହଂ ପୂର୍ବିକୟା ପରାପତନ୍ତି । (୬)

Canst thou not minister to a mind diseas'd;
pluck from the memory a rooted sorrow.,
Raze out the written troubles of the brain;
And with some sweet oblivious antidote
cleanse the stuff'd bosom of that perilous stuff
which weighs upon the heart ? (୭)

ଏଇ କାବ୍ୟାଂଶର ଅଦ୍‌ଭୁତ କବିକର୍ମ, ଏହାର ପରମାଶ୍ଚର୍ଯ୍ୟ ନୈପୁଣ୍ୟ ଓ କୌଶଳ, ଏହାର ଭାଷା ଓ ଅଳଙ୍କାରର ବିସ୍ମୟକର ପ୍ରକାଶଶକ୍ତି, ଯାହାର ପ୍ରତିଛବିରେ ଗୋଟିଏ ଦୁଇଟି କଥାରେ ଉଦ୍ଧିଷ୍ଟ ଆଇଡ଼ିୟାର ପୂର୍ଣ୍ଣାଙ୍ଗ ମୂର୍ତ୍ତି ଫୁଟାଇପାରନ୍ତି—ରସଜ୍ଞ ସମାଲୋଚକ ଏଗୁଡ଼ିକ ପ୍ରତି ଯେଉଁ ବିଶ୍ଳେଷଣ ବୁଦ୍ଧି ପ୍ରୟୋଗ କରିବେ, କବିଙ୍କୁ ଯଦି ସେହିପରି

୪ । ରସାକ୍ଷିପ୍ତତୟା ଯସ୍ୟ ବନ୍ଧଃ ଶକ୍ୟ କ୍ରିୟୋ ଭବେତ୍ ।
ଅପୃଥଗ୍ ଯତ୍ନନିର୍ବର୍ତ୍ତ୍ୟଃ ସୋହଲଂକାରୋ ଧ୍ୱନୌ ମତଃ ।।
ଧ୍ୱନ୍ୟାଲୋକ ୨/୧୭

୫ । ଧ୍ୱନ୍ୟାଲୋକ, ୨/୧୭ ବୃତ୍ତି

୬ । ଧ୍ୱନ୍ୟାଲୋକ, ୨/୧୭

୭ । ମ୍ୟାକ୍‌ବେଥ୍

ବିଶ୍ଳେଷଣ ଉପରେ ନିର୍ଭର କରିବାକୁ ହୁଅନ୍ତା, ତେବେ ଏ କାବ୍ୟର ସୃଷ୍ଟି ହିଁ ହୁଅନ୍ତା ନାହିଁ । କବିଙ୍କ ଦୃଷ୍ଟି ସମାହିତ ଥିଲା ତାଙ୍କ ନାଟକର ନାୟିକର ହୃଦୟଶୋଷୀ ଯନ୍ତ୍ରଣାକ୍ଳିଷ୍ଟ ଚିତ୍ତର ନିଦାରୁଣ ଚିତ୍ର ଉପରେ, ଆଉ ତାଙ୍କ ମହାପ୍ରତିଭା ତାହାର କାବ୍ୟୋପକରଣ ନିଜେ ଉପହାର ଆଣିଛି, ବୁଦ୍ଧି ଦେଇ ଅନ୍ୱେଷଣ କରି ତାହାକୁ ଆଣିବାକୁ ହୋଇନି ।

ଆନନ୍ଦବର୍ଦ୍ଧନ କହନ୍ତି, ଏହିପରି ଯେ ଘଟେ, ତାହାର କାରଣ, କବି ତା'ର କାବ୍ୟର ବାଚ୍ୟ ଦେଇ ରସକୁ ଆକର୍ଷଣ କରନ୍ତି ଏବଂ ଶ୍ରେଷ୍ଠ କାବ୍ୟର ଭାଷା ଓ ଅଳଙ୍କାର ତା'ର ବାଚ୍ୟଠାରୁ ସ୍ୱତନ୍ତ୍ର ବସ୍ତୁ ନୁହେଁ, ତାହା ବାଚ୍ୟର ହିଁ ଅଙ୍ଗବିଶେଷ ।

ଯୁକ୍ତଂ ଚୈତତ୍ । ଯତୋ ରସା ବାଚ୍ୟବିଶେଷୈରେବାକ୍ଷେପ୍ତବ୍ୟାଃ ।
ତତ୍ପ୍ରତିପାଦକୈଶ୍ଚ ଶବ୍ଦୈସ୍ତତ୍ପ୍ରକାଶିନୋ ବାଚ୍ୟବିଶେଷା ଏବ
ରୂପକାଦୟୋଽଲଂକାରାଃ । (୬)

କାଳିଦାସଙ୍କ ଉପମାର ଯେଉଁ ଖ୍ୟାତି, ତାହାର କାରଣ ଏହା ନୁହେଁ ଯେ ସେଗୁଡ଼ିକର ଉପମାନ ଓ ଉପମେୟର ମିଳନର ପରିମାଣ ଓ ଚମତ୍କାରିତ୍ୱ ଖୁବ୍ ବେଶୀ । ତାହାର ଶ୍ରେଷ୍ଠତ୍ୱ ଏଇ ଯେ, ସେଗୁଡ଼ିକ କାବ୍ୟର ବାଚ୍ୟକୁ ସଜାଇବାପାଇଁ କଟକକୁଣ୍ଡଳପରି ବାହାରୁ ଆଣିଥିବା ଅଳଙ୍କାର ନୁହେଁ । ସେଗୁଡ଼ିକ ବାଚ୍ୟର ଶୋଭା, ଯୌବନ ଯେପରି ଶରୀରର ଶୋଭା । ବାଚ୍ୟଠାରୁ ତାହାର ପ୍ରଭେଦ କରାଯାଏ ନାହିଁ, କିନ୍ତୁ କାବ୍ୟର ବାଚ୍ୟକୁ ତାହା ରସ-ଅଭିକ୍ଷେପଣର ଅଦ୍ଭୁତ କ୍ଷମତା ଦିଏ ।

ଅବୃଷ୍ଟିସଂରମ୍ଭମିବାମ୍ବୁବାହମପାମିବାଧାରମନୁତ୍ତରଙ୍ଗମ୍ ।
ଅନ୍ତଶ୍ଚରାଣାଂ ମରୁତାଂ ନିରୋଧାନ୍ନିବାତନିଷ୍କମ୍ପମିବ ପ୍ରଦୀପମ୍ ॥

ଏଠାରେ ବାଚ୍ୟ ଓ ଉପମା ମଧ୍ୟରେ କୌଣସି ଭେଦରେଖା ଟଣାଯାଇନପାରେ । ଏଠାରେ ବାଚ୍ୟ ହିଁ ଉପମା ଓ ଉପମା ହିଁ ବାଚ୍ୟ । ଫଳରେ ଶମ୍ଭୁଙ୍କ ଚିନ୍ତାରେ ମଗ୍ନ ଯେ ଅଧୃଷ୍ୟ ରୂପ, ଯାହା ଦେଖି ମଦନ ହାତରୁ ଶର ଓ ଧନୁ ଖସିପଡ଼ିଥିଲା, ସେହି ଧ୍ୟାନ ଗମ୍ଭୀର ରସରେ ପାଠକର ଚିତ୍ତ ଭରିଉଠେ ।

---

(୬) ଧ୍ୱନ୍ୟାଲୋକ, ୨/୧୭

ଏହି ଶ୍ରେଷ୍ଠ କାବ୍ୟର ଅଲଙ୍କାରରେ ଏହି ଗୋଟିଏ ଧାରା । ମହାଭାରତର 'ବିଦୁଳା' ଉପାଖ୍ୟାନରେ ବିଦୁଳା ତା'ର ଶତ୍ରୁନିର୍ଜିତ, ହୀନଚିତ୍ତ, ନିରୁଦ୍ୟମ ପୁତ୍ରକୁ ଉତ୍ତେଜିତ କରାଇଛି—

ଅଲାତଂ ତିନ୍ଦୁକସ୍ୟେବ ମୁହୂର୍ତ୍ତମପି ହି ଜ୍ୱଲ ।
ମା ତୁଷାଗ୍ନିରିବାନର୍ଚ୍ଚିର୍ ଧୂମାୟସ୍ୱ ଜିଜୀବିଷୁଃ ।।
ମୁହୂର୍ତ୍ତଂ ଜ୍ୱଳିତଂ ଶ୍ରେୟୋ ନ ତୁ ଧୂମାୟିତମ୍ ଚିରମ୍ ।।

'ତିନ୍ଦୁକରେ (୮) ଅଙ୍ଗାରପରି ଗୋଟିଏ ମୁହୂର୍ତ୍ତପାଇଁ ହେଉ ଜଳି-ଉଠ, ପ୍ରାଣର ମାୟାରେ ଶିଖାହୀନ ତଷୁ ନିଆଁପରି ଧୂମାୟମାନ ହୋଇ ରହନି । ଚିରଦିନ ଧୂମାୟିତ ରହିବାଠାରୁ ମୁହୂର୍ତ୍ତକପାଇଁ ଜଳି ଭସ୍ମ ହୋଇ-ଯିବା ହିଁ ଶ୍ରେୟସ୍କର ।' ଏହାର ବାଚ୍ୟ ଓ ଅଲଙ୍କାର ମଧ୍ୟରେ ଭେଦ ନାହିଁ, ସେଇ ଅଭେଦ ଏଇ ଦେଢ଼ଟି ଶ୍ଳୋକକୁ ରସୋଦ୍‌ବୋଧନର ଆଶ୍ଚର୍ଯ୍ୟ ଶକ୍ତି ଦେଇଛି । ରାମାୟଣରେ ହେମନ୍ତଋତୁରେ ନିଷ୍ପ୍ରଭ ଚନ୍ଦ୍ର ବର୍ଣ୍ଣନା—

ରବିସଙ୍କ୍ରାନ୍ତସୌଭାଗ୍ୟସ୍ତୁଷାରାବୃତମଣ୍ଡଳଃ ।
ନିଃଶ୍ୱାସାନ୍ଧ ଇବାଦର୍ଶଶ୍ଚନ୍ଦ୍ରମା ନ ପ୍ରକାଶତେ ।।

'ତୁଷାରାବୃତ ଆକାଶରେ ନିଃଶ୍ୱାସାନ୍ଧ ଦର୍ପଣ ପରି ଚନ୍ଦ୍ର ପ୍ରକାଶହୀନ ।'—ଏ ଉପମା ଗୋଟିଏ ଉଦାହରଣ ନୁହେଁ, ହେମନ୍ତର ବିଲୁପ୍ତ ଜ୍ୟୋତି ଚନ୍ଦ୍ରର ସମସ୍ତ ରୂପ ଫୁଟାଇଛି । ରବୀନ୍ଦ୍ରନାଥଙ୍କ 'ପଁଚିଶେ ବୈଶାଖ'—

ଆର୍ ସେ ଏକାନ୍ତେ ଆସେ
ମୋର ପାଶେ
ପୀତ ଉତ୍ତରୀୟ ତଲେ ଲୟେ ମୋର ପ୍ରାଣଦେବତାର
ସ୍ୱହସ୍ତେ ସଜ୍ଜିତ ଉପହାର—
ନୀଳକାନ୍ତ ଆକାଶେର ଥାଲା,
ତାରପରେ ଭୁବନେର ଉଚ୍ଛଲିତ ସୁଧାର ପେୟାଲା ।

୮ । କେନ୍ଦୁଗଛ

ଏହାର ବାଚ୍ୟ ଓ ଅଳଙ୍କାରରେ କିଏ ପ୍ରଭେଦ ଦେଖିବ ? କାରଣ, ଏହାର ଅଳଙ୍କାର ଏହାର ବାଚ୍ୟର ଶୋଭା ନୁହେଁ, ରୂପ । ଆଉ ସେଇଥିରେ ହିଁ ଏ କବିତାର ବାଚ୍ୟର ପିଆଲରୁ କାବ୍ୟରସ ଉଚ୍ଛଳିତ ହୋଇଯାଉଛି ।

ଆଳଙ୍କାରିକମାନେ ଯେତେବେଳେ କହନ୍ତି, କାବ୍ୟର 'ବାଚ୍ୟ' ତାର ଦେହ, 'ରୀତି ଯେପରି ଅବୟବସଂସ୍ଥାନ, 'ଅଳଙ୍କାର' କଟକକୁଣ୍ଡଳ-ପରି ଆଭରଣ । (୯)—ସେତେବେଳେ ସେମାନେ ନିମ୍ନ ଅଧିକାରୀମାନଙ୍କ ନିମନ୍ତେ କାବ୍ୟର ବାହ୍ୟତତ୍ତ୍ୱକୁ କହନ୍ତି, ନିଗୂଢ଼ ଚରମତତ୍ତ୍ୱ ନୁହେଁ । କାରଣ, କାବ୍ୟରେ ତାହାର ବାଚ୍ୟ ରୀତି ଅଳଙ୍କାରର କୌଣସି ସ୍ୱାତନ୍ତ୍ର୍ୟ ନାହିଁ, ସେମାନେ ଏକାନ୍ତ ରସପରତନ୍ତ୍ର । ରୀତି ଅଳଙ୍କାର ଯଦିଓ ବାହ୍ୟତଃ ବାଚ୍ୟର ଭଙ୍ଗି ଓ ଆଭରଣ, ବସ୍ତୁତଃ ତାହାର ଭଙ୍ଗିତ୍ୱ ଓ ଆଭରଣତ୍ୱ ହେଉଛି କାବ୍ୟର ରସ ସମ୍ପର୍କରେ । ଯେପରି ଅଭିନବଗୁପ୍ତ କହିଛନ୍ତି, "ଉପମା କାବ୍ୟର ବାଚ୍ୟାର୍ଥକୁ ହିଁ ଅଳଙ୍କୃତ କରେ, କିନ୍ତୁ ବାଚ୍ୟାର୍ଥର ତାହାହିଁ ହେଉଛି ଅଳଙ୍କାର ଯାହା ତାକୁ ବ୍ୟଙ୍ଗ୍ୟାର୍ଥର ଅଭିବ୍ୟଞ୍ଜନାର ସାମର୍ଥ୍ୟ ଦିଏ । ସୁତରାଂ ପ୍ରକୃତପକ୍ଷେ କାବ୍ୟର ଆତ୍ମା ଅର୍ଥାତ୍ ତାହାର ରସଧ୍ୱନି ହିଁ ହେଉଛି ଅଳଂକାର୍ଯ୍ୟ । କଟକ କେୟୂର ଆଦି ଯେ ଶରୀରରେ ପିନ୍ଧାଯାଏ, ସେଥିରେ ମଧ୍ୟ ନିଜର ଚିତ୍ତବୃତ୍ତି ବିଶେଷର ଔଚିତ୍ୟ ସୂଚକ ବୋଲି ଚେତନ ଆତ୍ମା ହିଁ ଅଳଙ୍କୃତ ହୁଏ । ସେଇଥିପାଇଁ ଚେତନାହୀନ ଶବଶରୀର କୁଣ୍ଡଳ ଆଦି ଦ୍ୱାରା ଶୋଭାପ୍ରାପ୍ତ ହୁଏ ନାହିଁ । କାରଣ, ସେଇଠି ଅଳଂକାର୍ଯ୍ୟ ବସ୍ତୁର ଅଭାବ । ଗୃହତ୍ୟାଗୀ ସନ୍ନ୍ୟାସୀର ଶରୀରରେ କଟକକୁଣ୍ଡଳାଦି ଅଳଙ୍କାର ଶୋଭା ପାଏ ନାହିଁ, ହାସ୍ୟାବହ ହୁଏ । କାରଣ ସେଠି ଅଳଂକରଣର ଔଚିତ୍ୟର ଅଭାବ । କିନ୍ତୁ ଦେହର ତ ଔଚିତ୍ୟ ଅନୌଚିତ୍ୟ କିଛି ନାହିଁ, ସୁତରାଂ ବସ୍ତୁତଃ ଆତ୍ମା ହିଁ ହେଉଛି ଅଳଂକାର୍ଯ୍ୟ ।"

---

୯ । ଅଳଙ୍କାରାଃ କଟକକୁଣ୍ଡଳାଦିବତ୍ । ରୀତୟୋଃ ବୟବସଂସ୍ଥାନ ବିଶେଷବତ୍ । ଦେହଦ୍ୱାରେଣୈବ ଶବ୍ଦାର୍ଥଦ୍ୱାରେଣ ତମେବ କାବ୍ୟସ୍ୟାତ୍ମ-ଭୂତରସମୁତ୍କର୍ଷୟନ୍ତଃ କାବ୍ୟସ୍ୟୋତ୍କର୍ଷକା ଉଚ୍ୟନ୍ତେ ।

—ସାହିତ୍ୟଦର୍ପଣ ।

"ଉପମୟା ଯଦ୍ୟପି ବାଚ୍ୟୋଽର୍ଥୋଽଲଂକ୍ରିୟତେ ତଥାପି ତସ୍ୟ
ତଦେବାଲଂକରଣଂ
ଯଦ୍‌ବ୍ୟଙ୍ଗ୍ୟାର୍ଥାଭିବ୍ୟଞ୍ଜନସାମର୍ଥ୍ୟାଧାନମିତି । ବସ୍ତୁତୋ
ଧ୍ୱନ୍ୟାତ୍ମୈବାଲଂକାର୍ଯଃ ।
କଟକକେୟୂରାଦିଭିରପି ହି ଶରୀରସମବାୟିଭିଶ୍ଚେତନ ଆତ୍ମୈବ
ତତ୍‌ଚିତ୍ତବୃତ୍ତି ବିଶେଷୌଚିତ୍ୟ ସୂଚନାତ୍ମତୟାଲଂ କ୍ରିୟତେ ।
ତଥାହ୍ୟ ଚେତନଂ
ଶବଶରୀରଂ କୁଣ୍ଡଳାଦ୍ୟୁପେତମପି ନ ଭାତି । ଅଲଂକାର୍ଯସ୍ୟାଭାବାତ୍ ।
ଯତିଶରୀରଂ କଟକାଦିଯୁକ୍ତଂ ହାସ୍ୟାବହଂ ଭବତି ।
ଅଲଂକାର୍ଯସ୍ୟାନୌଚିତ୍ୟାତ୍ ।
ନ ଚ ଦେହସ୍ୟ କିଂଚିଦନୌଚିତ୍ୟମିତି ବସ୍ତୁତ ଆତ୍ମୈବାଲଂକାର୍ଯ୍ୟଃ ।
(୧୦)

ଅର୍ଥାତ୍, କାବ୍ୟର ଯାହାକିଛି ଥାଏ, ତାହାର ଏକମାତ୍ର ମାପକାଠି କାବ୍ୟର ରସ । କାବ୍ୟର 'ଗୁଣ' ଭାବରେ, ଯାହା ତାହାର ରସକୁ ଉତ୍କର୍ଷ ଦିଏ । କାବ୍ୟର 'ଦୋଷ' ଆଉକିଛି ନୁହେଁ, ଯାହା ତାହାର ରସର ଲାଘବ ଘଟାଏ । କାବ୍ୟର ଭାଷା ବାଚ୍ୟ ରୀତି ଓ ଅଳଙ୍କାରର ଯାହା ଦୋଷ ଗୁଣ ବୋଲାହୁଏ, ତାହାସବୁ ଉପଚାର ମାତ୍ର ।

'ଅପି ତ୍ୱାତ୍ମଭୂତସ୍ୟ ରସସ୍ୟୈବ ପରମାର୍ଥତୋ ଗୁଣା ମାଧୁର୍ଯାଦୟଃ,
ଉପଚାରେଣତୁ ଶବ୍ଦାର୍ଥୟୋଃ । (୧୧)

'ମାଧୁର୍ଯ୍ୟ ପ୍ରଭୃତି ଯେଉଁ ଗୁଣ, ତାହା ପରମାର୍ଥତଃ କାବ୍ୟର ଆତ୍ମା-ସ୍ୱରୂପ ରସର ହିଁ ଗୁଣବିଶେଷ । କେବଳ ବ୍ୟବହାରିକ ଭାବେ ସେମାନଙ୍କର ଶବ୍ଦ ଓ ଅର୍ଥର ଗୁଣ କୁହାଯାଏ ।

ସୁତରାଂ କାବ୍ୟର ଭାଷା ରୀତି ବା ଅଳଙ୍କାରର କୌଣସି ବନ୍ଧା ନିୟମ ଅସମ୍ଭବ । କାରଣ ରସବ୍ୟତୀତ ଏମାନଙ୍କର ଅନ୍ୟ କୌଣସି ନିୟାମକ ନାହିଁ । ପ୍ରବୀଣ କବିମାନଙ୍କର କାବ୍ୟ ପରୀକ୍ଷାରେ ଯଦି ସେମାନଙ୍କର ବ୍ୟବହାରରୁ କୌଣସି ସାଧାରଣ ନିୟମ ଆବିଷ୍କାର

୧୦ । ଧ୍ୱନ୍ୟାଲୋକଲୋଚନ, ୨/୭
୧୧ । ଅଭିନବଗୁପ୍ତ

କରିପାଏ, ନବୀନ କବିଙ୍କର କାବ୍ୟପ୍ରତିଭା ହିଁ ଏତ ସଂପୂର୍ଣ୍ଣ ଭିନ୍ନ ନିୟମରେ ଚାଲି ସମାନ ରସୋଦ୍‌ବୋଧକ କାବ୍ୟର ସୃଷ୍ଟି କରିବେ । କାବ୍ୟର ବାଚ୍ୟ ବା ବିଷୟ ସମ୍ବନ୍ଧରେ ମଧ ଠିକ୍ ଏଇ କଥା । କି ଶ୍ରେଣୀର ବିଷୟକୁ ଅବଲମ୍ବନକରି କବି ତାର କାବ୍ୟ ରଚନା କରେ, ତାର ସୀମାରେଖା ଟାଣିବା ସମ୍ଭବ ନୁହେଁ । କବିର ପ୍ରତିଭା, ଅଭିନବଗୁପ୍ତ ଯାହାକୁ କହିଛନ୍ତି —'ଅପୂର୍ବବସ୍ତୁନିର୍ମାଣକ୍ଷମା ପ୍ରଜ୍ଞା', ସେ ଯେ କେଉଁ ଅପୂର୍ବ କଥାବସ୍ତୁର ସୃଷ୍ଟିକରି ରସିକକୁ ଆକର୍ଷଣ କରିବ, ଆଗରୁ କିଏ ତାହା ନିର୍ଣ୍ଣୟ କରିପାରିବ ? ସେଇଥିପାଇଁ ଆନନ୍ଦବର୍ଦ୍ଧନ କହିଛନ୍ତି,

ତସ୍ମାନ୍ନାସ୍ତ୍ୟେବ ତଦ୍‌ବସ୍ତୁ ଯତ୍ ସର୍ବାତ୍ମନା ରସତାତ୍ପର୍ଯ୍ୟବତଃ କବେସ୍ତ
—ଦିଚ୍ଛୟା ତଦଭିମତରସାଙ୍ଗତାଂନ ଧତ୍ତେ । (୧୨)

ଏପରି ବସ୍ତୁ ନାହିଁ ଯାହା ରସତତ୍‌ପର କବିର ଇଚ୍ଛାରେ ତାହାର ଅଭିମତ ପ୍ରକାଶୋପଯୋଗୀ ଅଙ୍ଗତ୍ୱ ଧାରଣକରେ ନାହିଁ । କାରଣ—

'ଅପାରେ କାବ୍ୟସଂସାରେ କବିରେବ ପ୍ରଜାପତିଃ ।'

ବସ୍ତୁ ଜଗତ ପରି କାବ୍ୟର ଜଗତ ମଧ ସୀମାହୀନ, ଏବଂ ଏହି ଜଗତର ସୃଷ୍ଟିକର୍ତ୍ତା ବ୍ରହ୍ମା ହେଉଛନ୍ତି କବି । ସୃଷ୍ଟି କାର୍ଯ୍ୟରେ ନିଜ ପ୍ରତିଭାର ନିୟମ ଛଡ଼ା ଅନ୍ୟ କୌଣସି ନିୟମ ତାଙ୍କ ଉପରେ ନାହିଁ ।

'ବ୍ୟବହାରୟନ୍ତି ଯଥେଷ୍ଟଂ ସୁକବିଃ କାବ୍ୟେ ସ୍ୱତନ୍ତ୍ରତୟା ।

କାବ୍ୟରେ କବିର ବ୍ୟବହାର ସ୍ୱାଧୀନ, କାରଣ ଏଠି ସେ ସ୍ୱତନ୍ତ୍ର, ବାହାରର କୌଣସିଥିର ପାରତନ୍ତ୍ର୍ୟ ତାଙ୍କର ନାହିଁ ।

କବିକୁ ନିଜ ପ୍ରତିଭାର ଯେଉଁ ନିୟମ ମାନିବାକୁ ପଡ଼େ, ସୁତରାଂ କାବ୍ୟବିଶ୍ୱର ଯାହା ଏକମାତ୍ର ନିୟମ, ଆଲଙ୍କାରିକମାନେ ତାହାର ନାମ ଦେଇଛନ୍ତି 'ଔଚିତ୍ୟ' ଅର୍ଥାତ୍ ଅଭିପ୍ରେତ ରସର ଉପଯୋଗିତ୍ୱ ।

ବାଚ୍ୟାନାଂ ବାଚକାନାଂ ଚ ଯଦୌଚିତ୍ୟେନ ଯୋଜନମ୍
ରସାଦିବିଷୟେ୍ୟ ନୈତତ୍ କର୍ମ ମୁଖ୍ୟଂ ମହାକବେଃ । (୧୩)

---

୧୨ । ଧ୍ୱନ୍ୟାଲୋକ, ୩/୪୨, ୪ର୍ଥବୃତ୍ତି
୧୩ । ଧ୍ୱନ୍ୟାଲୋକ, ୩/୩୨

ମହାକବିର ମୁଖ୍ୟ କବିକର୍ମ ହେଉଛି ରସର ଅଭିବ୍ୟଞ୍ଜନାର ଉପଯୋଗୀ କରି କାବ୍ୟର ବାଚ୍ୟ ଓ ବାଚକର ଉପନିବନ୍ଧନ । ସୁତରାଂ କାବ୍ୟର କଥା ଓ ରୀତି, ଛନ୍ଦ ଓ ଅଳଙ୍କାର, ଏମାନଙ୍କ ବିଚାରର ଅଭିପ୍ରାୟ ବିଧି ହେଉଛି—କାବ୍ୟର ରସ ସୃଷ୍ଟିରେ କାହାର କେତେ ଅବଦାନ, ତାହା ବିଚାର କରିବା, ଆଳଙ୍କାରିକମାନଙ୍କ ଭାଷାରେ, ଏମାନଙ୍କର ରସର 'ଅନୁଗୁଣତ୍ୱ'ର ପରିମାଣ ନିର୍ଣ୍ଣୟ କରିବା । ଏହାଛଡ଼ା ଅନ୍ୟ କୌଣସି ମାପ ଏଠାରେ ଅଚଳ ଓ ଅପ୍ରାସଙ୍ଗିକ ।

ଅନୌଚିତ୍ୟାଦୃତେ ନାନ୍ୟଦ୍ରସଭଙ୍ଗସ୍ୟ କାରଣମ୍ ।
ପ୍ରସିଦ୍ଧୌଚିତ୍ୟବନ୍ଧସ୍ତୁ ରସସ୍ୟୋପନିଷତ୍ ପରା ।। (୧୪)

ଅନୌଚିତ୍ୟ ଛଡ଼ା କାବ୍ୟର ରସଭଙ୍ଗର ଆଉ କୌଣସି କାରଣ ନାହିଁ । ଏଇ ଔଚିତ୍ୟବନ୍ଧ ହିଁ ରସର ଉପନିଷଦ, କାବ୍ୟତତ୍ତ୍ୱର ପରା ବିଦ୍ୟା । ଗୋଟିଏ ଉଦାହରଣ ଦିଆଯାଉ । ସଂପ୍ରତି ତର୍କ ହେଉଛି, ଶ୍ରୀରାମଚନ୍ଦ୍ରଙ୍କ ଚରିତ୍ରକୁ ରାମାୟଣ ଠାରୁ ଭିନ୍ନ ଭାବରେ କଳ୍ପନା କରି ଚିତ୍ରିତ କରିବାର ଅଧିକାର କୌଣସି ଆଧୁନିକ କବିର ଅଛି କି ନାହିଁ । ଦଳେ ପଣ୍ଡିତ କହୁଛନ୍ତି, ସେଇ ଅଧିକାର ନାହିଁ, କାରଣ ଶ୍ରୀରାମଚନ୍ଦ୍ରଙ୍କୁ ହିନ୍ଦୁମାନେ ଦେବତାମାନି ପୂଜା କରନ୍ତି । ସେ ଚରିତ୍ରକୁ ବିକୃତ କରିଦେଲେ ହିନ୍ଦୁଙ୍କ ମନରେ ଅର୍ଥାତ୍ ସେମାନଙ୍କ ଧର୍ମଭାବରେ ଆଘାତ ଲାଗେ । ପ୍ରାଚୀନ ହିନ୍ଦୁ ଆଳଙ୍କାରିକମାନେ କହନ୍ତି—କାବ୍ୟ ବିଚାର ଦିଗରେ ଏଇ ଯୁକ୍ତି ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ । କାବ୍ୟର କୌଣସି ଶବ୍ଦ ବା ଚରିତ୍ର କାହାର ଧର୍ମବିଶ୍ୱାସରେ ଆଘାତ ଦିଏ କି ନାହିଁ, କାବ୍ୟତତ୍ତ୍ୱ-ବିଚାରରେ ସେ ପ୍ରସଙ୍ଗର କୌଣସି ମୂଲ୍ୟ ବା ପ୍ରସାର ନାହିଁ । ସାମାଜିକ ଭାବରେ ତାହା ଦୃଶ୍ୟ ହୋଇପାରେ । ଆଘାତପ୍ରାପ୍ତ ଧର୍ମର ଧାର୍ମିକ ଲୋକଙ୍କ ଦେହରେ ଯଦି ବେଶୀ ବଳ ଥାଏ, ତେବେ ସେମାନେ କବିର ମୁଖ ବନ୍ଦ କରିଦେଇ ପାରନ୍ତି, ଯେପରିକି ରାଜନୈତିକ ଦୋଷାବହ ବୋଲି ରାଜା କାବ୍ୟବିଶେଷର ପ୍ରଚାର ବନ୍ଦ କରିଦେଇ ପାରନ୍ତି । କିନ୍ତୁ ତା' ଦ୍ୱାରା କାବ୍ୟର କାବ୍ୟତ୍ୱର ଭଲମନ୍ଦ କିଛି ବିଚାର ହୋଇପାରେ ନାହିଁ । ଏହି ମତକୁ

୧୪ । ଧ୍ୱନ୍ୟାଲୋକ, ୩/୧୦-୧୪ ବୃତ୍ତି

ପ୍ରାଚୀନ ଆଳଂକାରିକମାନଙ୍କର ମତ କୁହାଯାଇପାରେ, କେବଳ ସେମାନଙ୍କର କାବ୍ୟବିଚାର ମତକୁ ଅନୁମାନକରି ନୁହେଁ । କାରଣ, ଠିକ୍ ଏଇ ପ୍ରଶ୍ନ ସେମାନେ ଉତ୍ଥାପନ କରିଛନ୍ତି ଓ ମୀମାଂସା କରିଛନ୍ତି ଯେପରିକି ଆଦିକବିଙ୍କ ପରେ ବହୁ ସଂସ୍କୃତ କବି ରାମଚନ୍ଦ୍ରଙ୍କୁ ନାୟକକରି କାବ୍ୟ ଓ ନାଟକ ରଚନା କରିଛନ୍ତି । କିନ୍ତୁ ସେମାନଙ୍କର ତର୍କ ଓ ମୀମାଂସା, ଏ କୁଇଧାରା ନବୀନ ଗବେଷକଙ୍କ ଦ୍ୱାରା ତର୍କ ଓ ମୀମାଂସା ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ପ୍ରାଚୀନ ଆଳଙ୍କାରିକମାନଙ୍କର ବିଚାରର ଫଳ ଗୋଟିଏ ପରିକର ଶ୍ଳୋକରେ ସଂକ୍ଷେପରେ ଦିଆଯାଇଛି—

> ସନ୍ତି ସିଦ୍ଧରସପ୍ରଖ୍ୟା ଯେ ଚ ରାମାୟଣାଦୟଃ
> କଥାଶ୍ରୟା ନ ତୈର୍ଯୋଜ୍ୟା ସ୍ୱେଚ୍ଛା ରସବିରୋଧିନୀ । (୧୫)

'ରାମାୟଣ ପ୍ରଭୃତି ଯେଉଁ ସବୁ କାବ୍ୟ ସିଦ୍ଧରସଭୂଲ୍ୟ, ସେହି-ସବୁଠାରେ ଏପରି କଥା ଯୋଗ କରିବା ଅବିଧେୟ, ଯାହା ତାହାର ରସର ବିରୋଧୀ ।' ସିଦ୍ଧରସ କାବ୍ୟ କାହାକୁ କହନ୍ତି, ତାହା ଅଭିନବ ସୂତ୍ର ବୁଝାଇଛନ୍ତି—'ସିଦ୍ଧ ଆସ୍ୱାଦମାତ୍ର ଶେଷୋ ନ ତୁ ଭାବନୀୟୋ ରସୋ ଯେଷୁ'—'ଯେଉଁ କାବ୍ୟର ରସ ରସସୃଷ୍ଟିର ଉପାୟକୁ ଅତିକ୍ରମ କରି ପାଠକ ମନରେ ଆସ୍ୱାଦରେ ପରିଣତ ହୋଇଛି ।' "ଅର୍ଥାତ୍ ଯେଉଁ କାବ୍ୟ ଲୋକସମାଜରେ ଏତେ ପ୍ରଚଳିତ ଓ ପରିଚିତ ଯେ, ତା'ର ରସର ଆସ୍ୱାଦ ଯେପରି ତା'ର କଥାବସ୍ତୁ-ନିରପେକ୍ଷ ପାଠକ ମନରେ ଲାଗିଅଛି । ତାହାର କାବ୍ୟକଥା ପାଠକର ମନର ରସତାରରେ ଯେଉଁ ରାଗିଣୀର ଆଘାତ ଦେଇଛି, ତାହାର ବିଶେଷ ସୁର ପାଠକ ମନରେ ବାଜିଉଠିଛି; ନୂତନ କୌଣସି କାବ୍ୟ କଥାରେ ଯଦି ବେସୁର କିଛି ବାଜେ ତେବେ ତାର ରସଭଙ୍ଗ ଅନିବାର୍ଯ୍ୟ । ସୁତରାଂ ସେ କଥା ଔଚିତ୍ୟର ବ୍ୟତିକ୍ରମ । କିନ୍ତୁ ଏହି ଔଚିତ୍ୟ ରସର ଔଚିତ୍ୟ—ସମାଜ ବା ଧର୍ମର ଔଚିତ୍ୟ ନୁହେଁ ।

ଆଧୁନିକ କାଳରେ ଆଉ ଗୋଟିଏ ତର୍କ—'ରିଆଲିଜମ୍' ଓ 'ଆଇଡିଆଲିଜମ୍', ବସ୍ତୁତନ୍ତ୍ର ଓ ଭାବତନ୍ତ୍ରର ବିବାଦକୁ, ଆଳଙ୍କାରିକମାନେ ଔଚିତ୍ୟବିଧିରେ ବିଚାର କରିଛନ୍ତି । କାବ୍ୟର ଲକ୍ଷ୍ୟ ରସ । ରସ ଭାବର

୧୫ । ଧ୍ୱନ୍ୟାଲୋକ, ୩/୧୦-୧୪ ବୃତ୍ତି

ପରିଣତି । କିନ୍ତୁ ଭାବ ନିରାଲମ୍ବ କିନାହିଁ ନୁହେଁ, ବସ୍ତୁକୁ ଆଶ୍ରୟ କରି ଏହା ଜନ୍ମହୁଏ ଓ ବଞ୍ଚିରହେ । କବି ଭାବରେ ଏହି ବସ୍ତୁକୁ କଥାଶରୀର ଦେଇ ରସର ଉଦ୍‌ବୋଧନ କରିଥାନ୍ତି । ସୁତରାଂ କାବ୍ୟର କଥାବସ୍ତୁ ଯଦି ଭାବର ପ୍ରାକୃତ ବସ୍ତୁର ଯଥାଯଥ ଚିତ୍ର ନହୁଏ, ତେବେ ରସୋଦ୍‌ବୋଧରେ ବାଧା ଜନ୍ମେ । ଆଳଙ୍କାରିକମାନେ ଏହାକୁ କହିଛନ୍ତି 'ଭାବୌଚିତ୍ୟ' ବା ପ୍ରକୃତ୍ୟୌଚିତ୍ୟ' । ଆନନ୍ଦବର୍ଦ୍ଧନ କହିଛନ୍ତି, 'ଯେଉଁମାନଙ୍କର ଲୌକିକ ଅଭିଷେକ ନେଇ ଯେଉଁ କାବ୍ୟ, ସେଥିରେ ସାତ ସମୁଦ୍ର ପାର ପ୍ରଭୃତି କଥାର ଅବତାରଣା ବର୍ଣ୍ଣନା-ମହିମାରେ ସୌଷ୍ଠବସଂପନ୍ନ ହେଲେ ବି କାବ୍ୟଟି ଯଥାର୍ଥ ନୀରସ ଏବଂ ତା'ର କାରଣ ହେଉଛି 'ଅନୌଚିତ୍ୟ'—

ତଥା ଚ କେବଳମାନୁଷସ୍ୟ ରାଜାଦେରବର୍ଣ୍ଣନେ ସପ୍ତାର୍ଣ୍ଣବଲଙ୍ଘନାଦିଲକ୍ଷଣା

ବ୍ୟାପାରା ଉପନିବଧ୍ୟମାନାଃ ସୌଷ୍ଠବଭୃତୋଽପି ନୀରସା ଏବ ନିୟମେନ ଭାନ୍ତି ।

ତତ୍ର ତ୍ୱନୌଚିତ୍ୟମେବ ହେତୁଃ । (୧୬)

ବ୍ୟାଖ୍ୟାକାର ଅଭିନବଗୁପ୍ତ କହିଛନ୍ତି, ବର୍ଣ୍ଣନା ଏପରି ହେବ, ଯେପରିକି ସେଥିରେ ପାଠକର ପ୍ରତୀତି ଖଣ୍ଡନ ନହୁଏ ।

ଯତ୍ର ହୃଦୟାନାଂ ପ୍ରତୀତିଖଣ୍ଡନା ନ ଜାୟତେ ତାଦୃଗ୍ ବର୍ଣ୍ଣନୀୟମ୍ ।

କାବ୍ୟର ଜଗତ ବସ୍ତୁର ଜଗତ ନୁହେଁ, ମାୟାର ଜଗତ୍—ଏକଥା ସତ୍ୟ । କିନ୍ତୁ ବସ୍ତୁନିରପେକ୍ଷ ମାୟା ହୁଏନି, ସୁତରାଂ ସମ୍ପୂର୍ଣ୍ଣ ଅବାସ୍ତବ କାବ୍ୟ ଅସମ୍ଭବ । ଏବଂ କାବ୍ୟର କଥାବସ୍ତୁର ବସ୍ତୁପରତାର ଲାଘବ ଯଦି ତା'ର ରସ ଆକର୍ଷଣଶକ୍ତି ହୀନତା ହୁଏ, ତେବେ ସେ ହୀନତା କାବ୍ୟର ଦୋଷ । କିନ୍ତୁ କଥାବସ୍ତୁର ଲକ୍ଷ୍ୟ ବସ୍ତୁ ନୁହେଁ, ରସ । କାବ୍ୟ ଯେ ବସ୍ତୁକୁ ଚିତ୍ରିତ କରେ ତାହା ତା'ର ବାସ୍ତବତା ପାଇଁ ନୁହେଁ, ରସାଭିବ୍ୟକ୍ତି ପାଇଁ । ସେହିପରି ଉପାୟ ଯଦି ଉଦ୍ଦେଶ୍ୟଠାରୁ ବଳିପଡ଼େ ତାହାହେଲେ ଠିକ୍ ବିପରୀତ ଅନୌଚିତ୍ୟ ଦୋଷ-ଯୋଗେ କାବ୍ୟର ରସଭଙ୍ଗ ହୁଏ । ବସ୍ତୁର ବାସ୍ତବତା ଅନନ୍ତ । କୌଣସି କବି ତାହାର ସମଗ୍ରତାକୁ କାବ୍ୟରେ

୧୬ । ଧ୍ୱନ୍ୟାଲୋକ, ୩/୧୦-୧୪ ବୃତ୍ତି

କଥାବସ୍ତୁରେ ସ୍ଥାନ ଦେଇ ପାରନ୍ତି ନାହିଁ । ଯଦି ପାରନ୍ତେ, ତା'ଫଳରେ ଯାହା ସୃଷ୍ଟି ହୁଅନ୍ତା ତାହା ଆଉ ଯାହା ହେଉନା କାହିଁକି, କାବ୍ୟ ହୁଅନ୍ତାନି । ତେଣୁ ଏଇ ବାସ୍ତବତାର କେତେକାଂଶ କେଉଁ କାବ୍ୟରେ ସ୍ଥାନ ପାଇବ ତାହା ସେଇ କାବ୍ୟର ଉଦ୍ଦିଷ୍ଟ ରସ ଉପରେ ଓ ସେଇ କବିର ପ୍ରତିଭାର ପ୍ରକୃତି ଉପରେ ନିର୍ଭର କରେ । ବସ୍ତୁର ବାସ୍ତବତାର ଯେଉଁ ଅଂଶଟା କାବ୍ୟରସକୁ ଅଭିବ୍ୟଞ୍ଜିତ ଓ ପରିପୁଷ୍ଟ କରେନାହିଁ, ସେଇ ଅଂଶ କାବ୍ୟର ଅଙ୍ଗ ନୁହେଁ, କାବ୍ୟର ବୋଝ । ଆଳଙ୍କାରିକମାନେ କହିଛନ୍ତି—

ଯସ୍ମିନ୍ ରସୋ ବା ଭାବୋ ବା ତାତ୍ପର୍ଯେଣ ପ୍ରକାଶ୍ୟତେ ।
ସମ୍ବୃତ୍ୟାଭିହିତଂ ବସ୍ତୁ ଯତ୍ରାଲଂକାର ଏବ ବା ।। (୧୭)

'ଶ୍ରେଷ୍ଠ କାବ୍ୟରେ ରସ ହିଁ ପ୍ରଧାନ ହୋଇ ବ୍ୟକ୍ତ ହୁଏ, ତା'ର ବସ୍ତୁ ଓ ଅଳଙ୍କାର ଯେପରି ଗୋପନ ରହିଥାଏ ।' ଅର୍ଥାତ୍, ଆଳଙ୍କାରିକମାନଙ୍କ ମତରେ—କାବ୍ୟରେ ଅଳଙ୍କାରର ଆତିଶଯ୍ୟ ଓ ବାସ୍ତବତାର ଆତିଶଯ୍ୟ ଏକ ଶ୍ରେଣୀର ଦୋଷ ଅଟେ । କାରଣ ଦୁଇଟିଯାକ ଆତିଶଯ୍ୟ ଉଦ୍ଦିଷ୍ଟ ରସକୁ ପ୍ରଧାନ ନକରି ଉପାୟକୁ ହିଁ ପ୍ରଧାନ କରି ଗଢ଼େ ।

ବସ୍ତୁତନ୍ତ୍ର ଓ ଭାବତନ୍ତ୍ର ରସସୃଷ୍ଟିର ଦୁଇଟି ଭିନ୍ନ କୌଶଳ । କେଉଁ କବି କି ପ୍ରକାର କାବ୍ୟକୌଶଳ ଅବଲମ୍ବନ କରିବେ, ତାହା ତାଙ୍କର ପ୍ରତିଭାର ବିଶେଷତ୍ୱ ଉପରେ ନିର୍ଭର କରେ ।

କବି ସ୍ୱଭାବ ଭେଦ ନିବନ୍ଧନତ୍ୱେନ କାବ୍ୟପ୍ରସ୍ଥାନଭେଦଃ । (୧୮)

କବି ପ୍ରତିଭାର ସ୍ୱଭାବର ଭିନ୍ନତା ଫଳରେ କାବ୍ୟ ପ୍ରସ୍ଥାନ ବା ରୀତିର ଭେଦ ସୃଷ୍ଟି ହୁଏ । ଏଇ ଦୁଇ କୌଶଳ ଦ୍ୱାରା ସୃଷ୍ଟି ରସ ମଧ୍ୟରେ ଆସ୍ୱାଦନର ପ୍ରଭେଦ ଅଛି, କିନ୍ତୁ ରସତ୍ୱର ପ୍ରଭେଦ ନାହିଁ । ସୁତରାଂ କେହି'କାହାକୁ କାବ୍ୟଜଗତରୁ ନିର୍ବାସନ କରିବାର ଅଧିକାରୀ ନୁହେଁ । ଗୋଟିଏ ଆସ୍ୱାଦନର ରସଭୋଗରେ ଅରୁଚି ହେଲେ କାବ୍ୟପାଠକର କିଛିଦିନ ପାଇଁ ହୁଏତ ଅନ୍ୟ ରସ ଆସ୍ୱାଦନରେ ଏକାନ୍ତ ରୁଚି ପରିଲକ୍ଷିତ ହୁଏ । ଏହି ରୁଚି ପରିବର୍ତ୍ତନ ଦେଇ କାବ୍ୟର କାବ୍ୟତ୍ୱ ବିଚାର ହୁଏନାହିଁ । ଶକୁନ୍ତଳାର ବିଦୂଷକ କହିଥିଲେ, ପିଣ୍ଡିଖର୍ଜୁରରେ ଅରୁଚି ହେଲେ ତେନ୍ତୁଳି ଆଡ଼କୁ ମନ ବଳେ ।

---

୧୭ । ଧ୍ୱନ୍ୟାଲୋକ, ୩/୪୨-୪୩ ବୃତ୍ତି
୧୮ । ବକ୍ରୋକ୍ତିଜୀବିତ, ୧/୨୪ ବୃତ୍ତି

୩

# ଫଳ

ହେଲମ୍‌ହୋଲସ୍ ଆବିଷ୍କାର କରିଥିଲେ ଯେ, ମଣିଷର ଆଖି, ଯାହାକୁ ଲୋକେ ପ୍ରକୃତିର ସୃଷ୍ଟି କୌଶଳର ଗୋଟିଏ ଦୃଷ୍ଟାନ୍ତ ଉଦାହରଣ ମନେକରନ୍ତି, ଯନ୍ତ୍ର ହିସାବରେ ତାହା ବହୁତ ତ୍ରୁଟିପୂର୍ଣ୍ଣ । ଆଲୋକ ରଶ୍ମିକୁ ଗ୍ରହଣ କରି ରେଟିନାର ପରଦାରେ ଛାୟା ପକାଇବା ପାଇଁ ଆଖିର ଆଗପଛ, ଉପରେ ତଳେ, ବାମ ଡାହାଣରେ ଯେଉଁ ଗତି ଅଛି, ତା'ର ସୀମା ଅତି ସାମାନ୍ୟ । ଫଳରେ ଟିକିଏ ବେଶୀ ଦୂରର ଜିନିଷ ଦୃଷ୍ଟିର ବାହାରେ ଥାଏ, ଆଉ ଟିକିଏ ବେଶୀ ପାଖର ଜିନିଷ ବି ଦେଖା-ଯାଏନା । ଆଖିକୁ ତାଜା ରଖିବା ପାଇଁ ଯେଉଁ ସବୁ ନାଡ଼ୀ ତା ଭିତରେ ରକ୍ତ ସରବରାହ କରେ, ସେଗୁଡ଼ିକ ପୁଣି ଅବିଚ୍ଛିନ୍ନ ଆଲୁଅ ପ୍ରବେଶ ପାଇଁ ବାଧା ସୃଷ୍ଟି କରେ । ଦୁଇ ଆଖିର ଦୃଷ୍ଟି ଯେପରି ଦୁଇମୁଖୀନ ନହୋଇ ଏକମୁଖୀନ ହୁଏ, ତାହାର ଯନ୍ତ୍ରପାତି ଭିତରେ ବି ନାନା ଅସୁବିଧା । ମୋଟ ଉପରେ ଏଇ ପ୍ରକାର ଗୋଟିଏ ବୈଜ୍ଞାନିକ ଯନ୍ତ୍ର ଯଦି କେହି ହେଲମ୍‌ହୋଲସଙ୍କୁ ବିକିବା ପାଇଁ ଆସିଥାଆନ୍ତା ତେବେ କିଣିବା କଥା ଦୂରେ ଥାଉ, ସେ ତାକୁ ବେଶ୍ ଦୁଇପଦ କଡ଼ା କଥା ଶୁଣାଇ ବିଦାୟ କରି ଦେଇଥାଆନ୍ତେ । କିନ୍ତୁ ଏସବୁ ସତ୍ତ୍ୱେ ମଣିଷର ଆଖି ଏକ ଅମୂଲ୍ୟ ସମ୍ପଦ । କାରଣ ମନୁଷ୍ୟର ନିତ୍ୟନୈମିତ୍ତିକ କାର୍ଯ୍ୟ ତାଦ୍ୱାରା ବେଶ୍ ଚାଲିଯାଏ, ଦୋଷତ୍ରୁଟି ପାଇଁ କୌଣସି ବାଧା ଉପୁଜେ ନାହିଁ । କାରଣ ସେସବୁ ବୀକ୍ଷଣରେ ଧରାପଡ଼େନା, ଧରାପଡ଼େ ଅଣୁବୀକ୍ଷଣରେ । ଆଖି ଭଳି କାବ୍ୟକୁ ସମାଲୋଚନାର 'ଅପ୍‌ଥାଲ୍‌ମସ୍‌କୋପ୍' ମାଧ୍ୟମରେ ଦେଖିଲେ, ଶ୍ରେଷ୍ଠ କାବ୍ୟର ବି ଅନେକ ଦୋଷତ୍ରୁଟି ଆବିଷ୍କାର କରାଯାଏ । ବିଶ୍ୱନାଥ କବିରାଜ କହିଛନ୍ତି, 'ନିର୍ଦୋଷ ନହେଲେ ଯଦି କାବ୍ୟ ହୋଇ-ପାରନ୍ତା ନାହିଁ, ତେବେ କାବ୍ୟପଦାର୍ଥକୁ ଅତି ବିରଳ ଏପରିକି ନିର୍ବିଷୟ

ତନ୍ନାଇଥାଆନ୍ତା; କାରଣ ସବୁ ଦିଗରୁ ନିର୍ଦୋଷ କାବ୍ୟ ଏକାନ୍ତ ଅସମ୍ଭବ ।' (୧)

କିନ୍ତୁ ଆଖିର କାର୍ଯ୍ୟ ଯେପରି ନିର୍ଦୋଷ ବୈଜ୍ଞାନିକ ଯନ୍ତ୍ର ହେବା ନୁହେଁ, ମନୁଷ୍ୟକୁ ରୂପର ଜ୍ଞାନ ଦେବା, ସେହିପରି କାବ୍ୟର କାର୍ଯ୍ୟ ଦୋଷହୀନ ଶବ୍ଦାର୍ଥ ରଚନା କେବଳ ନୁହେଁ ବରଂ ରସ ସୃଷ୍ଟି କରିବା । ସୁତରାଂ ଦୋଷତ୍ରୁଟି ସତ୍ତ୍ୱେ ଯେଉଁ ପ୍ରବନ୍ଧ ରସ ସୃଷ୍ଟିରେ ସଫଳକାମ, ତାହା କାବ୍ୟ, ଆଉ ସେଠି ଯାହା ନିଷ୍ଫଳ ସେଇ ରଚନାର ଦୋଷଗୁଣ କାବ୍ୟର ନୁହେଁ, କାରଣ କାବ୍ୟତ୍ୱ ହିଁ ସେଠି ଅନୁପସ୍ଥିତ । ଆନନ୍ଦବର୍ଦ୍ଧନ କାବ୍ୟର ଦୋଷକୁ ଦୁଇଭାଗରେ ବିଭକ୍ତ କରି କଥାଟାର ବିଶଦ ଆଲୋଚନା କରିଛନ୍ତି— 'ଦ୍ୱିବିଧୋ ହି ଦୋଷଃ—କବେରବ୍ୟୁତ୍ପତ୍ତିକୃତୋଽଶକ୍ତିକୃତଶ୍ଚ' । (୨) କାବ୍ୟର ଦୋଷ ଦୁଇପ୍ରକାର—କବିର ଅବ୍ୟୁତ୍ପତ୍ତିକୃତ ଓ କବିର ଅଶକ୍ତିଜନିତ ।' ନଗଣ୍ୟ ଅସଙ୍ଗତି ଓ ଅନୌଚିତ୍ୟ, ଭାଷାର କାଠିନ୍ୟ, ଛନ୍ଦର ଅଲଙ୍କତ୍ୟ ପ୍ରଭୃତି କବିର ଅବ୍ୟୁତ୍ପତ୍ତିକୃତ ଦୋଷ କାବ୍ୟପକ୍ଷରେ ମାରାତ୍ମକ ନୁହେଁ । କାରଣ—

> ଅବ୍ୟୁତ୍ପତ୍ତିକୃତୋ ଦୋଷଃ ଶକ୍ତ୍ୟା ସଂବ୍ରିୟତେ କବେଃ ।
> ଯସ୍ତ୍ୱଶକ୍ତିକୃତସ୍ତସ୍ୟ ସ ଝଟିତ୍ୟବଭାସତେ ।। (୩)

ଯେଉଁ ଦୋଷ ଅବ୍ୟୁତ୍ପତ୍ତିକୃତ, କବିଙ୍କର ରସସୃଷ୍ଟିର ଶକ୍ତି ସେଗୁଡ଼ିକୁ ସମ୍ବରଣ କରି ରଖିଥାଏ । ଅର୍ଥାତ୍ ଶକ୍ତିତିରସ୍କୃତ ହୋଇ ସେସବୁ ଏ ପ୍ରକାର ଅଲକ୍ଷ୍ୟ ହୋଇ ରହିଯାଏ । (୪) କିନ୍ତୁ କାବ୍ୟ ଦୋଷର ମୂଳ ହେଉଛି, 'କବିର ରସସୃଷ୍ଟିକାରୀ ଶକ୍ତିର ସ୍ୱଳ୍ପତା, ସଦ୍ଧର୍ମ୍ମ

---

୧ । ଏବଂ କାବ୍ୟଂ ପ୍ରବିରଳବିଷୟଂ ନିର୍ବିଷୟଂ ବା ସ୍ୟାତ୍ । ସର୍ବଥା ନିର୍ଦ୍ଦୋଷସ୍ୟୈକାନ୍ତମସମ୍ଭବାତ୍—ସାହିତ୍ୟଦର୍ପଣ ।

୨ । ଧ୍ୱନ୍ୟାଲୋକ, ୩/୬

୩ । ଧ୍ୱନ୍ୟାଲୋକ, ୩/୬ ବୃତ୍ତି

୪ । ତତ୍ରାବ୍ୟୁତ୍ପତ୍ତିକୃତୋ ଦୋଷଃ ଶକ୍ତିତିରସ୍କୃତତ୍ୱାତ୍ କଦାଚିନ୍ନ ଲକ୍ଷ୍ୟତେ ।
—ଧ୍ୱନ୍ୟାଲୋକ ୩/୬ ।

ପାଠକ ଶବ୍ଦରେ ଏ ଦୋଷ ମୁହୂର୍ତ୍ତିମାତ୍ରେ ହିଁ ପ୍ରତିହତ ହୁଏ ।' ଏହି ଦୋଷ ହିଁ କାବ୍ୟର ଯଥାର୍ଥ ଦୋଷ । ତା ନହେଲେ 'ବ୍ୟୁତ୍ପତ୍ତି'ର—ଅଭିନବଗୁପ୍ତ ଯାହାକୁ କହିଛନ୍ତି ତଦୁପଯୋଗୀସମସ୍ତବସ୍ତୁପୌର୍ବାପର୍ଯ୍ୟ-ପରାମର୍ଶକୌଶଳମ୍', କାବ୍ୟର ସମସ୍ତ ବସ୍ତୁ ଉଦ୍ଦିଷ୍ଟ ରସର ଉପଯୋଗୀ କି ନା ତାର ପୂର୍ବାପର ବିଚାର କରି ପ୍ରୟୋଗ କୌଶଳ—ତା'ର ଅଭାବ ମହାକବିମାନଙ୍କର କାବ୍ୟ ପ୍ରସଙ୍ଗରେ ବି ମଝିମଝିରେ ଦେଖାଯାଏ, କିନ୍ତୁ ଯେପରି ଅଭିନବଗୁପ୍ତ କହିଛନ୍ତି, 'ସେମାନଙ୍କ କବିପ୍ରତିଭା ଏପରି ଯେ, ସେମାନଙ୍କ ରଚିତ କାବ୍ୟ ବର୍ଣ୍ଣିତ ପ୍ରତିଟି ବିଷୟ ଚିତ୍ତକୁ ବନ୍ଦୀ କରି ରଖେ, ପୂର୍ବାପର ବିଚାରର ଅବସର ଦିଏନାହିଁ । ଯେପରି ଅତିପରାକ୍ରମଶାଳୀ ପୁରୁଷର ଅନୁଚିତ ବିଷୟରେ ବି ଯୁଦ୍ଧ-ବିକ୍ରମ ଦେଖି ସାଧୁବାଦ ଦେବାକୁ ହୁଏ, ପୂର୍ବାପରବିଚାର ମନକୁ ଆସେନା, ଠିକ୍ ସେହିପରି ।(୫) ପ୍ରତି କାବ୍ୟାଂଶ ଉଦ୍ଦିଷ୍ଟ ରସକୁ ଉପଚିତ ଓ ପ୍ରଗାଢ଼ କରିଥିବା ବିପୁଳ ରସନିସ୍ୟନ୍ଦୀ କାବ୍ୟ ଖୁବ୍ ବେଶୀ ସୃଷ୍ଟି ହୋଇନାହିଁ । ସେଥିପାଇଁ ଆନନ୍ଦ-ବର୍ଦ୍ଧନ କହିଛନ୍ତି, କାବ୍ୟ ସଂସାର ଅତି ବିଚିତ୍ର, କବି ପରମ୍ପରାବାହୀ, କିନ୍ତୁ ମହାକବି ଭାବରେ କାଳୀଦାସ ପ୍ରଭୃତି ଦୁଇତିନିଜଣଙ୍କୁ ହିଁ ଗଣନା କରାଯାଇଥାଏ ।(୬) ସଂସ୍କୃତ କାବ୍ୟ ସାହିତ୍ୟର ଗଣ୍ଡି ଭିତରୁ ବାହାରକୁ ଯାଇ ବିଶ୍ୱସାହିତ୍ୟ ପରିପ୍ରେକ୍ଷୀରେ ବିଚାର କରିଲେ ବି ଆନନ୍ଦ-ବର୍ଦ୍ଧନଙ୍କ କଥାର ପରିବର୍ତ୍ତନ ହୁଏନାହିଁ । କାଳିଦାସ ଯେତେବେଳେ ବିଶ୍ୱସ୍ରଷ୍ଟାର ସୃଷ୍ଟି ପ୍ରବୃତ୍ତିକୁ ସମଗ୍ରବିଧ ଗୁଣର ପରାଂମୁଖୀ ବୋଲି

---

୫ । ଅସୌବର୍ଣ୍ଣିତସ୍ତଥା ପ୍ରତିଭାନବତା କବିନା ଯଥା ତତ୍ରୈବ ବିଶ୍ରାନ୍ତଂ ହୃଦୟଂ ପୌର୍ବାପର୍ଯ୍ୟପରାମର୍ଶଂ କର୍ତ୍ତୁଂ ନ ଦଦାତି । ଯଥା ନିର୍ବ୍ୟାଜପରା-କ୍ରମସ୍ୟ ପୁରୁଷସ୍ୟାବିଷୟେଽପି ଯୁଦ୍ଧ୍ୟମାନସ୍ୟ ତାବତ୍ତସ୍ମିନ୍ନବସରେ ସାଧୁବାଦୋ ବିତୀର୍ଯ୍ୟତେ ନ ତୁ ପୌର୍ବାପର୍ଯ୍ୟପରାମର୍ଶୋ ତଥାତ୍ରାପୀତି ଭାବଃ—ଅଭିନବଗୁପ୍ତ, ଧ୍ୱନ୍ୟାଲୋକଲୋଚନ ୩/୬ ।

୬ । ଅସ୍ମିନ୍ନତିବିଚିତ୍ରକବିପରଂପରାବାହିନି ସଂସାରେ କାଳିଦାସ ପ୍ରଭୃତୟୋ ଦ୍ୱିତ୍ରାଃ ପଞ୍ଚଷା ବା ମହାକବୟ ଇତି ଗଣ୍ୟନ୍ତେ—ଧ୍ୱନ୍ୟାଲୋକ, ୧/୬ ।

ଅଭିହିତ କରିଥିଲେ, ସେତେବେଳେ କବିପ୍ରତିଭାର ସୃଷ୍ଟିକଥା ହିଁ ନିଶ୍ଚୟ ତାଙ୍କର ମନେଥିବ ।

ରସର ତାରତମ୍ୟ ଯୋଗେ କାବ୍ୟ ଭିତରେ ଶ୍ରେଷ୍ଠତ୍ୱର ଶ୍ରେଣୀକରଣ ହୋଇଥାଏ । କିନ୍ତୁ କାବ୍ୟ ଓ ଅକାବ୍ୟର ପ୍ରଭେଦ ଏହାଠାରୁ ସମ୍ପୂର୍ଣ୍ଣ ଭିନ୍ନ । କଥା, ଭାଷା, ଅଳଙ୍କାର, ଛନ୍ଦ ଆଦି କାବ୍ୟର ରସସୃଷ୍ଟିର ଯାହାସବୁ ଉପକରଣ ସେସବୁ ଥାଇ ମଧ୍ୟ କାବ୍ୟର ଆତ୍ମା 'ରସ' ଯେଉଁଥିରେ ନଥାଏ, ସେଇ ହେଉଛି ଅକାବ୍ୟ । ଆଲଙ୍କାରିକମାନେ ଏ ଶ୍ରେଣୀର ରଚନାର ନାମକରଣ କରିଛନ୍ତି 'ଚିତ୍ରକାବ୍ୟ' । ଚିତ୍ର ଯେପରି ବସ୍ତୁର ଅନୁକରଣ କିନ୍ତୁ ବସ୍ତୁ ନୁହେଁ, ଏହା ସେହିପରି କାବ୍ୟର ଅନୁକରଣ କିନ୍ତୁ କାବ୍ୟ ନୁହେଁ । (୭) ଏଇ ପ୍ରକାର ଅକାବ୍ୟ ବା ଚିତ୍ରକାବ୍ୟ ରଚନାର ନାନା କାରଣ ଅଛି । ପ୍ରଧାନ କାରଣ ରସସୃଷ୍ଟି କରିବାର ପ୍ରତିଭା ନଥାଇ କାବ୍ୟରଚନା ପାଇଁ ଅଭିଳାଷ । ଏଇ ଇଚ୍ଛାର ଆବେଗରେ ଯେଉଁ ରଚନା କରାଯାଏ ତାହା ସ୍ୱଭାବତଃ କାବ୍ୟ ହୁଏନାହିଁ, କେବଳ କାବ୍ୟର ବାହ୍ୟିକ ମୂର୍ତ୍ତି ହୋଇଥାଏ । ଏଥି ନିମନ୍ତେ ପ୍ରତିଭାଶାଳୀ କବିଙ୍କର ସମସାମୟିକ କବିଯଶପ୍ରାର୍ଥୀ ଅକବିଗଣ ତାଙ୍କର ଭାଷା, ଛନ୍ଦ ଓ ଶୈଳୀ ଅନୁକରଣ କରିଥାନ୍ତି । କାରଣ କାବ୍ୟରସର ସେଇ ମୂର୍ତ୍ତି ସେତେବେଳେ ସେମାନଙ୍କ ଦୃଷ୍ଟିରେ ସବୁଠାରୁ ବେଶୀ ଜାଜ୍ୱଲ୍ୟମାନ । ସେମାନଙ୍କ ମନରେ ଏଇ ଭରସା ଥାଏ ଯେ କେତେକାଂଶରେ ସେଇ ମୂର୍ତ୍ତିକୁ ସାକାର କରିପାରିଲେ ହିଁ କାବ୍ୟର ପ୍ରାଣ ଆପଣାଛୁଏଁ ଆସିଯିବ । ଆନନ୍ଦବର୍ଦ୍ଧନ ଲେଖିଛନ୍ତି, ରସତତ୍ପରତାଶୂନ୍ୟ ବିଶୃଙ୍ଖଳବାକ୍‌ଭଙ୍ଗୀ ସମନ୍ୱିତ ଲେଖକମାନଙ୍କର କାବ୍ୟରଚନାର ପ୍ରବୃତ୍ତି ଦେଖି ସେ 'ଚିତ୍ରକାବ୍ୟ' ନାମର ପରିକଳ୍ପନା କରିଛନ୍ତି । (୮) କିନ୍ତୁ ଆନନ୍ଦବର୍ଦ୍ଧନ ଏ ଶ୍ରେଣୀର ଲେଖକମାନଙ୍କ ଉପରେ ଅନ୍ୟାୟ କରିନାହାନ୍ତି । ସୂକ୍ଷ୍ମଭାବେ ବିଚାର କରି

୭ । କେବଲବାଚ୍ୟବାଚକବୈଚିତ୍ର୍ୟମାତ୍ରାଶ୍ରୟେଣୋପନିବଦ୍ଧମାଲେଖ୍ୟପ୍ରଖ୍ୟଂ ଯଦାଭାସତେ ତଚ୍ଚିତ୍ରମ୍ । ନ ତନ୍ମୁଖ୍ୟଂ କାବ୍ୟମ୍ । କାବ୍ୟାନୁକାରୋହ୍ୟସୌ ।—ଧ୍ୱନ୍ୟାଲୋକ, ୩/୪୨, ୪୩ ।

୮ । ଏତଚ୍ଚ ଚିତ୍ରଂ କବୀନାଂ ବିଶୃଙ୍ଖଳଗିରାଂ ରସାଦିତାତ୍ପର୍ଯ୍ୟମନପେକ୍ଷ୍ୟୈବ କାବ୍ୟପ୍ରବୃତ୍ତିଦର୍ଶନାଦସ୍ମାଭିଃ ପରିକଳ୍ପିତମ୍ ।—ଧ୍ୱନ୍ୟାଲୋକ ।

ଏମାନଙ୍କର ଯାହା ପ୍ରାପ୍ୟ ତାହା ତାଙ୍କୁ ଦେଇଛନ୍ତି । ଏମାନଙ୍କ ରଚନାକୁ ନୀରସ କୁହାଯାଏ ବୋଲି ଯେ ରସ ସେଥିରେ ଆଦୌ ନାହିଁ, ତା ନୁହେଁ । କାରଣ, ବସ୍ତୁ ସଂସ୍ପର୍ଶ ବିନା ରଚନା ହୋଇପାରେନା, ଆଉ ଜଗତର ପ୍ରତ୍ୟେକ ବସ୍ତୁ କୌଣସି ନା କୌଣସି ରସର ଅଙ୍ଗତ୍ୱ ଧାରଣ କରିଥାଏ । ରସ ହେଉଛି ବିଭାବଜନିତ ଚିତ୍ତବୃତ୍ତି ବିଶେଷ । ଏପରି କୌଣସି ବସ୍ତୁ ନାହିଁ, ଯାହା କାବ୍ୟରୂପ ନେଲେ କିଛି ନା କିଛି ଏପ୍ରକାର ଚିତ୍ତବୃତ୍ତିକୁ ଜନ୍ମ ଦିଏ ନାହିଁ । ଯଦି ଏପରି ବସ୍ତୁ ଥାଏ, ତେବେ ଚିତ୍ରକାବ୍ୟର ଲେଖକମାନେ ମଧ୍ୟ ତାହାକୁ ସେମାନଙ୍କର ରଚନାର ବିଷୟ କରି ନଥାନ୍ତି । (୯) କିନ୍ତୁ ଅକବି ବାଚ୍ୟ ସାମର୍ଥ୍ୟଦ୍ୱାରା ବଶ ହୋଇ ଯେଉଁ ରସର ସୃଷ୍ଟି କରିଥାଏ, ତାହାର ପ୍ରତୀତି ଅତି ଦୁର୍ବଳ । ଏଇ ଦୁର୍ବଳ ରସ ରଚନାକୁ ହିଁ ନୀରସ ଚିତ୍ରକାବ୍ୟ କୁହାଯାଏ । "ବାଚ୍ୟ ସାମର୍ଥ୍ୟବଶେନ···ତଥାବିଧେ ବିଷୟେ ରସାଦିପ୍ରତୀତିରଭବନ୍ତୀ ପରିଦୁର୍ବଲା ଭବତୀତ୍ୟନେନାପି ପ୍ରକାରେଣ ନୀରସତ୍ୱଂ ପରିକଳ୍ପ୍ୟ ଚିତ୍ରବିଷୟୋ ବ୍ୟବସ୍ଥାପ୍ୟତେ ।"

ଅର୍ଥାତ୍ ଯେକୌଣସି ରସ କିଛି ପରିମାଣରେ ଥିଲେ କାବ୍ୟ ହୁଏନାହିଁ । ସହୃଦୟ କାବ୍ୟରସିକ ଚିତ୍ତର ରସ ପ୍ରତୀତିକୁ ପ୍ରଥମଧାପରେ ଯାହା ପହଞ୍ଚେନାହିଁ, ତାହା କାବ୍ୟ ନୁହେଁ, ଚିତ୍ରକାବ୍ୟ ।

ଶକ୍ତିହୀନ ଲେଖକର ରସସୃଷ୍ଟିର ପ୍ରୟାସ ଚିତ୍ରକାବ୍ୟରଚନାର ଏକମାତ୍ର କାରଣ ନୁହେଁ । କେତେକ ନିବନ୍ଧ କାବ୍ୟ ଆକାରରେ ଲେଖାହୁଏ, ଯାହାର ଲକ୍ଷ୍ୟ ରସସୃଷ୍ଟି ନୁହେଁ, ଉପଦେଶ ପ୍ରଦାନ, ପ୍ରଚାର ବା ମନୁଷ୍ୟର ବୁଦ୍ଧି ସମୀପରେ କୌଣସି ସତ୍ୟ ପ୍ରକାଶ କରିବା । ଯେପରି ପୋପ୍‌ଙ୍କର 'ଏସେ ଅନ୍ ମ୍ୟାନ' କୃଷ୍ଣଚନ୍ଦ୍ର ମଜୁମଦାରଙ୍କର 'ସଦ୍‌ଭାବଶତକ' । ଏପ୍ରକାର ରଚନାକୁ କାବ୍ୟାକାର ଦେବାରେ ଯେଉଁ ଦୁର୍ବଳ

---

୯ । ଯସ୍ମାଦବସ୍ତୁସଂସ୍ପର୍ଶିତା କାବ୍ୟସ୍ୟ ନୋପପଦ୍ୟତେ । ବସ୍ତୁ ଚ ସର୍ବମେବ ଜଗଦ୍‌ଗତମବଶ୍ୟଂ କସ୍ୟଚିଦ୍ ରସସ୍ୟାଙ୍ଗତ୍ୱଂ ପ୍ରତିପଦ୍ୟତେ । ବିଭାବତ୍ୱେନ ଚିତ୍ତବୃତ୍ତିବିଶେଷା ହି ରସାଦୟଃ; ନ ଚ ତଦସ୍ତି ବସ୍ତୁ କିଞ୍ଚିତ୍ ଯନ୍ନ ଚିତ୍ତବୃତ୍ତିବିଶେଷମୁପଜନୟତି, ତଦନୁତ୍ପାଦନେ ବା କବିବିଷୟତୈବ ତସ୍ୟ ନ ସ୍ୟାତ୍ । —ଧ୍ୱନ୍ୟାଲୋକ ।

ଉପାଦାନର ସୃଷ୍ଟି ହୁଏ, ତାହାର ଉଦ୍ଦେଶ୍ୟ ବାଚ୍ୟ ବା ବକ୍ତବ୍ୟକୁ କିଞ୍ଚିତ୍ ଉତ୍କର୍ଷ କରିବା । ରସ ଏଠାରେ ଉପାୟ, ବକ୍ତବ୍ୟ ହିଁ ଏହାର ଲକ୍ଷ୍ୟ । ମହାକବିମାନେ ମଧ୍ୟ ଲୀଳାଚ୍ଛଳେ ମଝିମଝିରେ ଏପ୍ରକାର ଚିତ୍ରକାବ୍ୟ ରଚନା କରନ୍ତି । ଯେପରି ରବୀନ୍ଦ୍ରନାଥଙ୍କ 'କଣିକା' ।

କାଣିକଉଡ଼ି ପିଠି ଦେଖାଇ ଠେଙ୍ଗାଟିକୁ କହେ
ଖୋଳଅଣା ତୁମ ମୂଲ୍ୟ, ପାଞ୍ଚସୁକା ନୁହେଁ ।
ଠେଙ୍ଗା କହେ, ମୁଁ ତ ସେହି ମୂଲ୍ୟ ମୋର ମଥା
ତୁମର ଯା ମୂଲ୍ୟ ଗୁଡ଼ ଢେର୍ ବେଶୀ କଥା । (ଅନୁବାଦ)

ଏଇ ପଦଟିର ଯାହା ଆବେଦନ ତାହା ମନୁଷ୍ୟର ଚିତ୍ତ ସମୀପରେ ନୁହେଁ, ବୁଦ୍ଧି ପାଖରେ । କେବଳ ବକ୍ତବ୍ୟର ଚମତ୍କାରିତା ଓ ବଚନ-ନୈପୁଣ୍ୟ ପାଇଁ ଏହାକୁ କାବ୍ୟ ବୋଲି ଭ୍ରମ ହୁଏ । କିନ୍ତୁ କବି ପୁଣି ଯେତେବେଳେ ଲେଖିଛନ୍ତି—

ପ୍ରାଚୀରର ଛିଦ୍ର ମଧ୍ୟେ ନାମଗୋତ୍ରହୀନ
ଫୁଲଟିଏ ଫୁଟିଅଛି ଅତିଶୟ ଦୀନ

ସେତେବେଳେ ବାଚ୍ୟ ସ୍ପଷ୍ଟତଃ ବୁଦ୍ଧିକୁ ଅତିକ୍ରମକରି ରସର ଧ୍ୱନିରେ ଚିତ୍ତକୁ ଆପ୍ଲୁତ କରେ । ଅକବିର କାବ୍ୟସୃଷ୍ଟିର ପ୍ରୟାସରୁ ଚିତ୍ରକାବ୍ୟର ଜନ୍ମ । ମହାକବିଙ୍କର ଚିତ୍ରକାବ୍ୟ ଖେଳ ବି କାବ୍ୟ ହୋଇଉଠେ ।

ରସର ପ୍ରାଚୁର୍ଯ୍ୟ ନଥିଲେ କାବ୍ୟ ହୁଏ ନାହିଁ, ଏକଥା ଠିକ୍, କିନ୍ତୁ ରସ ହିଁ କଣ କାବ୍ୟର ଚରମ ଲକ୍ଷ୍ୟ ? ଅନେକେ ଏଥିରେ ଏକମତ ନୁହନ୍ତି । ସେମାନେ କହନ୍ତି ଶ୍ରେଷ୍ଠ କାବ୍ୟର ଶ୍ରେଷ୍ଠତ୍ୱ କେବଳ ତା'ର ରସର ବ୍ୟାପକତା ଓ ଗଭୀରତା ଉପରେ ନିର୍ଭର କରେନା, ଏଇ ରସ ସୃଷ୍ଟି ଭିତର ଦେଇ କବି ଯେଉଁ ମହତ୍ତର ଓ ବୃହତ୍ତର ପଦାର୍ଥଟି ମନୁଷ୍ୟକୁ ଦାନ କରିଥାନ୍ତି, ସେଥିରେ ଶ୍ରେଷ୍ଠତ୍ୱ ନିର୍ଭର କରେ । ସେଇ ପଦାର୍ଥଟି କଣ, ଏ ବିଷୟରେ ମତପାର୍ଥକ୍ୟ ଅଛି । କେହି କେହି କହନ୍ତି କବି ରସର ତୁଳିରେ ମନୁଷ୍ୟ ଚିତ୍ତରେ ମଙ୍ଗଳର ଛବି ଆଙ୍କିଥାନ୍ତି, ଆଉ କେହି କହନ୍ତି, କବି ସତ୍ୟକୁ ରସମୂର୍ତ୍ତିରେ ଉଭା କରାନ୍ତି । ତେବେ ଏସବୁ

ମତର ଅନ୍ତର୍ନିହିତ କଥାହେଲା ଏଇ ଯେ, ରସ ବସ୍ତୁଟିର ନିଜର ଓଜନ ଖୁବ୍ ବେଶୀ ନୁହେଁ । ଏଇ ହାଲକା ବସ୍ତୁଟି ଯଦି କାବ୍ୟର ଚରମ ବସ୍ତୁ ହୋଇଥାନ୍ତା, ତେବେ କାବ୍ୟ ପିଲ୍‌ଖେଳ ପରି ହୋଇଥାନ୍ତା, ଜ୍ଞାନୀଗଣଙ୍କର ଉପାଦେୟ ନୁହେଁ । ଅର୍ଥାତ୍ କାବ୍ୟରେ ସୁନ୍ଦରର ଆଡ଼ଆଳରେ ସତ୍ୟ ଓ ଶିବ ଅଛି ବୋଲି ହିଁ କାବ୍ୟର ଶ୍ରେଷ୍ଠତ୍ୱ ସ୍ୱୀକୃତ ।

ସମାଜବନ୍ଧନ ମନୁଷ୍ୟକୁ ପଶୁତ୍ୱରୁ ମୁକ୍ତି ଦେଇଛି ଆଉ ସେଇ ମୁକ୍ତିର ଆହ୍ୱାନ ଫଳରେ ହିଁ ଆଜି ସଭ୍ୟତାର ସକଳ ସୃଷ୍ଟି ସମ୍ଭବ ହୋଇଛି । ମନୁଷ୍ୟର କେତେଗୁଡ଼ିଏ ଚିତ୍ତବୃତ୍ତିର କେତେକ ବିଶେଷ ପ୍ରବଣତା ଉପରେ ସମାଜର ସ୍ଥିତି ଓ ସମୃଦ୍ଧି ନିର୍ଭର କରେ । କାବ୍ୟରସ ମାଧ୍ୟମରେ ଯେଉଁମାନେ ମଙ୍ଗଳ ଚାହାନ୍ତି, ଟିକିଏ ପରୀକ୍ଷା କଲେ ଜଣାଯିବ ସେମାନେ ପ୍ରକୃତରେ ଚାହାନ୍ତି କାବ୍ୟ ଯେପରିକି ଏଇସବୁ ସାମାଜିକ ଚିତ୍ତବୃତ୍ତି ଆଡ଼କୁ ପାଠକର ମନକୁ ଅନୁକୂଳ କରାଏ । କାବ୍ୟ ନିକଟରେ ସଭ୍ୟତାର ମୂଳ ଭିତ୍ତିରୁ ଏଇ ଦାବି ଆଳଙ୍କାରିକମାନେ ସମ୍ପୂର୍ଣ୍ଣ ଉପେକ୍ଷା କରି ପାରିନାହାନ୍ତି । ସେମାନେ କାବ୍ୟରସକୁ 'ଲୋକୋତ୍ତର' କହିଛନ୍ତି ସତ୍ୟ, କିନ୍ତୁ ଏଇ ଅଲୌକିକ ବସ୍ତୁ ଲୌକିକ ଜଗତର କୌଣସି ହିତ ସାଧନ କରେ ନାହିଁ, ସମାଜ ମଧ୍ୟରେ ଥାଇ ସିଧାସଳଖ ଏତେ ବଡ଼ ଅସାମାଜିକ କଥା ପ୍ରଚାର କରିବାକୁ ସେମାନେ ଯୁକ୍ତିଯୁକ୍ତ ମନେ କରିନାହାନ୍ତି । ସୁତରାଂ ଅନେକ ଆଳଙ୍କାରିକ ନିଜର ଗ୍ରନ୍ଥାରମ୍ଭରେ ପ୍ରମାଣ କରିଛନ୍ତି ଯେ କାବ୍ୟପାଠରୁ ଧର୍ମ, ଅର୍ଥ, କାମ, ମୋକ୍ଷ—ଚତୁର୍ବର୍ଗ ଫଳପ୍ରାପ୍ତି ହୋଇଥାଏ (୧୦) । କାବ୍ୟ କବିକୁ ଯଶ ଓ ଅର୍ଥ—ମାନେ ସକଳ କାମ୍ୟବସ୍ତୁ ଦାନ କରେ । କାବ୍ୟରେ ଯେଉଁସବୁ ଦେବସ୍ତୁତି ଥାଏ ସେସବୁ ଧର୍ମର ସହାୟ ଆଉ ଧର୍ମର ଶେଷଫଳ ମୋକ୍ଷ । କାବ୍ୟ ଲୋକଙ୍କୁ କର୍ମରେ ପ୍ରବୃତ୍ତ କରେ ଓ ଅକର୍ମରୁ ନିବୃତ୍ତ କରେ । କାବ୍ୟ ପାଠକକୁ ଉପଦେଶ ଦିଏ—ରାମାଦିବତ୍ ପ୍ରବର୍ତ୍ତିତବ୍ୟଂ ନ ରାବଣାଦିବତ୍, ରାମଙ୍କ ପରି ପିତୃସତ୍ୟ ପାଳନ ନିମନ୍ତେ ବନକୁ ଯିବା ଉଚିତ ରାବଣ ପରି

---

୧୦ । ଚତୁର୍ବର୍ଗଫଳପ୍ରାପ୍ତିଃ ସୁଖାଦଳ୍ପଧିୟାମପି । କାବ୍ୟାଦେବ ଯତସ୍ତେନ ତତ୍‌ସ୍ୱରୂପଂ ନିରୂପ୍ୟତେ—ସାହିତ୍ୟଦର୍ପଣ, ୧/୨ ।

ଅରଦାସ୍ମ କରଣ ଅନୁଚିତ । (୧୧) ତେବେ ଏ ଉପଦେଶ ନୀରସ ଶାସ୍ତ୍ର ବାକ୍ୟର ଉପଦେଶ ନୁହେଁ, କାନ୍ତାସମ୍ମିତତୟୋପଦେଶଯୁଜେ (୧୨), —କାନ୍ତାର ଉପଦେଶ ପରି ସରସ, ଅର୍ଥାତ୍ ଅମ୍ଳମଧୁର ଉପଦେଶ ।

କାବ୍ୟରସର ଏଇ ଫଳଶ୍ରୁତି ଆଲଙ୍କାରିକମାନଙ୍କର ମନକଥା ନୁହେଁ, ସମାଜ ଓ ସାମାଜିକ ଲୋକଙ୍କ ସହିତ ଆପୋଷ ଆଲୋଚନାର କଥା, ତାହାର ପ୍ରମାଣ ହେଉଛି, ଏସବୁ କଥା ସେମାନଙ୍କର ଗ୍ରନ୍ଥାରମ୍ଭରେ ହିଁ ଅଛି; କିନ୍ତୁ ଗ୍ରନ୍ଥ ଆଲୋଚନା ଭିତରେ ତାହାର ଲେଶମାତ୍ର ଆଭାସ ମିଳେ ନାହିଁ । ସେଇଠି ସେମାନେ କହନ୍ତି—

ବାଗ୍‌ଧେନୁର୍‌ଦୁଗ୍‌ଧ ଏବଂ ହି ରସଂ ଯଲ୍ଲାଭତୃଷ୍ଣୟା
ତେନ ନାସ୍ୟ ସମଃ ସ ସ୍ୟାଦ୍‌ଦୁହ୍ୟତେ ଯୋଗିଭିର୍ହିଯଃ । (୧୩)

'କାବ୍ୟର ବାଗ୍‌ଧେନୁଠାରୁ ଯେଉଁ ରସଦୁଗ୍‌ଧ କ୍ଷରିତ ହୁଏ, ଯୋଗୀମାନେ ଯେଉଁ ତତ୍ତ୍ୱରସ ଦୋହନ କରନ୍ତି, ତାହା ଏ ସ୍ୱା ସହିତ ସମାନ ନୁହେଁ ।' ଅଭିନବଗୁପ୍ତ ରସର ଆସ୍ୱାଦକୁ କହିଛନ୍ତି, 'ପରବ୍ରହ୍ମାସ୍ୱାଦ-ସବିଧଃ (୧୪)—'ପରବ୍ରହ୍ମ ଆସ୍ୱାଦତୁଲ୍ୟ ଆସ୍ୱାଦ' ରସର ସ୍ୱରୂପ ଚିହ୍ନାଇବା ପାଇଁ ଆଲଙ୍କାରିକମାନେ କହିଛନ୍ତି—

ସତ୍ତ୍ୱୋଦ୍ରେକାଦଖଣ୍ଡସ୍ୱପ୍ରକାଶାନନ୍ଦ ଚିନ୍ମୟଃ
ବେଦ୍ୟାନ୍ତରସ୍ପର୍ଶଶୂନ୍ୟୋବ୍ରହ୍ମାସ୍ୱାଦସହୋଦରଃ ।। (୧୫)

'ରସ ଏକ ଘନ ଆନନ୍ଦ ସ୍ୱରୂପ ଚେତନା; କୌଣସି ବିଷୟାନ୍ତରର ସଂସ୍ପର୍ଶରେ ଏହାର ପ୍ରବାହ ବିଚ୍ଛିନ୍ନ ନୁହେଁ, ଯେଉଁ ରଜଃ ମନୁଷ୍ୟର

---

୧୧ । ଚତୁର୍ବର୍ଗଫଳପ୍ରାପ୍ତିର୍ହି କାବ୍ୟତୋ ରାମାଦିବତ୍ ପ୍ରବର୍ତ୍ତିତବ୍ୟମ୍, ନ ରାବଣାଦିବଦିତ୍ୟାଦିକୃତ୍ୟାକୃତ୍ୟପ୍ରବୃତ୍ତିନିବୃତ୍ତ୍ୟୁପଦେଶ ଦ୍ୱାରେଣସୁପ୍ରତୀତୈବ—ସାହିତ୍ୟଦର୍ପଣ, ୧/୨ ।

୧୨ । କାବ୍ୟପ୍ରକାଶ

୧୩ । ଭଟ୍ଟନାୟକ

୧୪ । ଧ୍ୱନ୍ୟାଲୋକ ଲୋଚନ, ୨/୪

୧୫ । ସାହିତ୍ୟଦର୍ପଣ

କାମନା ଓ କର୍ମପ୍ରବୃତ୍ତିର ମୂଳ, ଯେଉଁ ତମଃ ତା'ର ମନକୁ ଲୋଭ ଓ ମୋହରେ ଆବଦ୍ଧ ଓ ଆବୃତ କରିରଖେ—ସେସବୁକୁ ସମ୍ପୂର୍ଣ୍ଣ ଅଭିଭୂତ କରି ସତ୍ତ୍ୱ ରୂପେ ଏହାର ଆବିର୍ଭାବ ହୁଏ । ତେଣୁ ଏହାର ଆସ୍ୱାଦ 'ବ୍ରହ୍ମଆସ୍ୱାଦର ସହୋଦର ।'

କହିବା ବାହୁଲ୍ୟ, ଉପନିଷଦର ବ୍ରହ୍ମସାକ୍ଷାତ୍କାର ବର୍ଣ୍ଣନାର ଅନୁକରଣରେ ଆଳଙ୍କାରିକମାନେ ରସଆସ୍ୱାଦନର ଏଇ ବର୍ଣ୍ଣନା କରିଛନ୍ତି । ସେମାନେ ଯେଉଁପରି ଭାବରେ କାବ୍ୟରସିକର ରସର ଆସ୍ୱାଦନକୁ ଯୋଗୀର ପରଂବ୍ରହ୍ମ ସାକ୍ଷାତ୍କାର ଭଳି ବୋଲି କହିଛନ୍ତି, ତାହା ଅର୍ଥ କେବଳ ଏହା ନୁହେଁ ଯେ, ରସ ଅତି ଶ୍ରେଷ୍ଠବସ୍ତୁ । ବ୍ରହ୍ମ-ସାକ୍ଷାତକାରର ଆଉ କୌଣସି ଅନ୍ୟ ଫଳ ନାହିଁ । ବ୍ରହ୍ମସାକ୍ଷାତ୍‌ରେ କି ଲାଭ ହୁଏ—ଏହା ପ୍ରଶ୍ନ ନୁହେଁ, ପ୍ରଳାପ । କାରଣ, 'ଆତ୍ମଲାଭାନ୍ନ ପରଂ ବିଦ୍ୟତେ' ଆତ୍ମଲାଭ ପରେ ଆଉ କିଛି ନଥାଏ । ପୁରୁଷାନ୍ନ ପରଂ କିଞ୍ଚିତ୍ ସା କାଷ୍ଠା ସା ପରା ଗତିଃ—ପରମପୁରୁଷଙ୍କ ସାକ୍ଷାତ ପରେ ଆଉ କିଛି ନାହିଁ, ସେଠି ସୀମା ଶେଷ, ଗତିର ନିବୃତ୍ତି ସେଠି । ବ୍ରହ୍ମସାକ୍ଷାତ୍କାର ସହିତ ରସ ଆସ୍ୱାଦନର ତୁଳନା କରି ଆଳଙ୍କାରିକଗଣ କହିବାକୁ ଚାହିଁଛନ୍ତି ଯେ, ରସର ଶ୍ରେଷ୍ଠତ୍ୱ ବିଷୟାନ୍ତରନିରପେକ୍ଷ । କାହାରି ଉପାୟ ଭାବରେ ରସର ମୂଲ୍ୟ ହୁଏନାହିଁ । ଯେପରି ବ୍ରହ୍ମ ସମ୍ବନ୍ଧରେ ଠିକ୍ ସେହିପରି ରସ ସମ୍ବନ୍ଧରେ 'ତତଃ କିମ୍'—ଏ ପ୍ରଶ୍ନ ଅର୍ଥହୀନ । ବ୍ରହ୍ମସାକ୍ଷାତ ଲାଭରେ ମନୁଷ୍ୟର ସାମାଜିକ ଜୀବନରେ କି ଉପକାର ହୁଏ ଏ ଅନୁସନ୍ଧାନ ଯେପରି, କାବ୍ୟ ସହାର ଓ ସମାଜର କେତେଟା କାମରେ ଆସେ ଏ ପ୍ରଶ୍ନ ଠିକ୍ ସେହିପରି । ଉପଦେଷ୍ଟା ଭୂମିକା ବ୍ୟତୀତ କାବ୍ୟର ଅନ୍ୟକୌଣସି ମୂଲ୍ୟ ଯେଉଁମାନେ ଦେଖିପାରନ୍ତି ନାହିଁ 'ଦଶରୂପକ'ର ସାହସୀ ଲେଖକ ସେମାନଙ୍କୁ କହିଛନ୍ତି 'ଅଳ୍ପବୁଦ୍ଧି ସାଧୁଲୋକ' ।

ଆନନ୍ଦନିସ୍ୟନ୍ଦିଷୁ ରୂପକେଷୁ
ବ୍ୟୁତ୍ପତ୍ତିମାତ୍ରଂ ଫଳମଳ୍ପବୁଦ୍ଧିଃ ।
ଯୋ ହି ପୀତି ହାସା ଦିବଦାହ ସାଧୁଃ
ତସ୍ମୈ ନମଃ ସ୍ୱାଦପରାଙ୍ମୁଖାୟ ।। (୧୬)

---

୧୬ । ଦଶରୂପକ, ୧/୬

'ଆନନ୍ଦନିସ୍ୟନ୍ଦ ନାଟ୍ୟର ଫଳ ବି ଯେଉଁମାନେ ଇତିହାସ ପ୍ରଭୃତିର ଫଳପରି ସାଂସାରିକ ଜ୍ଞାନର ବ୍ୟୁତ୍ପତ୍ତି ବୋଲି କହନ୍ତି ସେହି ଅଳ୍ପବୁଦ୍ଧି ସାଧୁଜନଙ୍କୁ ନମସ୍କାର । ରସ ଆସ୍ୱାଦ କ'ଣ, ତାହା ସେମାନେ ଜାଣନ୍ତି ନାହିଁ ।'

ଆଜିର ମନୁଷ୍ୟ ପାଖରେ ସମାଜବନ୍ଧନ ଓ ସମାଜବ୍ୟବସ୍ଥା ଖୁବ୍ ବଡ଼ ହୋଇଉଠିଛି । ଏତେ ବଡ଼, ଯେପରିକି ମନେହୁଏ ମନୁଷ୍ୟର ସମସ୍ତ ଚେଷ୍ଟା ଓ ସବୁ ସୃଷ୍ଟିର ଏହାହିଁ ହେଉଛି ଚରମ ଲକ୍ଷ୍ୟ । ଯେଉଁ ସୃଷ୍ଟି ଏହି ବନ୍ଧନ ଓ ବ୍ୟବସ୍ଥାର ପ୍ରତ୍ୟକ୍ଷ ବା ପରୋକ୍ଷରେ କୌଣସି କାର୍ଯ୍ୟରେ ଲାଗେ ନାହିଁ, ତାହାର ଯେ କିଛି ମୂଲ୍ୟ ଅଛି ସେକଥା ଭାବିବା ବି ଅନେକଙ୍କ ପକ୍ଷରେ କଠିନ ହୋଇଉଠିଛି । ଏ ମନୋଭାବ ଖୁବ୍ ପ୍ରାଚୀନ ନୁହେଁ । ଗତ ଦେଢ଼ଶହ ବର୍ଷ ହେଲା ପଶ୍ଚିମ ୟୁରୋପର ଲୋକେ କେତେକ କଳା-କୌଶଳକୁ ଆୟତ୍ତ କରି ମନୁଷ୍ୟର ନିତ୍ୟ ଘରକରଣା ଓ ସମାଜ ବ୍ୟବସ୍ଥାର ଯେଉଁ ଦ୍ରୁତ ପରିବର୍ତ୍ତନ ଆଣିଛନ୍ତି—ସେଇଠୁ ହିଁ ଏହି ମନୋ-ଭାବର ଜନ୍ମ । ଏହାର ଆଶ୍ଚର୍ଯ୍ୟ ସଫଳତାରୁ ସମାଜ ଓ ଜୀବନଯାତ୍ରାର କାମ୍ୟଠାରୁ କାମ୍ୟତର ପରିବର୍ତ୍ତନର ଏକ ଅବାଧ ଓ ସୀମାହୀନ ଆଦର୍ଶର ଛବି ମନୁଷ୍ୟର ଆଖି ଆଗରେ ଫୁଟି ଉଠିଛି । ଲୋକଙ୍କର ଭରସା ହୋଇଛି ଯେ, ଏହି ପରିବର୍ତ୍ତନଶୀଳ ସମାଜବ୍ୟବସ୍ଥା ଅନତିଦୂର ଭବିଷ୍ୟତରେ ହିଁ ସମସ୍ତଙ୍କୁ ଦୁଃଖକ୍ଲେଶହୀନ ସକଳ ପ୍ରକାର ସୁଖସୌଭାଗ୍ୟର ଅଧିକାରୀ କରିଦେବ । ସଂସାର ଓ ସମାଜଠାରୁ ମନୁଷ୍ୟର ପ୍ରାପ୍ତି ଆଶା ଯେତେ ବଢ଼ିଛି, ମନୁଷ୍ୟର 'ତନୁ ମନ ଧନ' ଉପରେ ଏଗୁଡ଼ିକର ଦାବି ମଧ୍ୟ ସେତିକି ବଢ଼ିଛି । କବିର ରସସୃଷ୍ଟିର ଶକ୍ତି ଏହି ସଂସାର ଓ ସମାଜର ମଙ୍ଗଳ ପାଇଁ ଆପଣାକୁ ବ୍ୟାପୃତ କରି ସାର୍ଥକ ହୁଏ, ଏକଥା ଆଜି ଅସଙ୍ଗତ ମନେହୁଏ ନାହିଁ ।

ପ୍ରାଚୀନ ଆଲଙ୍କାରିକମାନଙ୍କ ସମ୍ମୁଖରେ ଆଶାର ଏହି ମରୀଚିକା ନଥିଲା, ସେତେବେଳର ଜ୍ଞାନୀଗଣ ଜନ୍ମଜରାମୃତ୍ୟୁଗ୍ରସ୍ତ ସଂସାରକୁ ମୋଟ ଉପରେ ଦୁଃଖମୟ ବୋଲି ଜାଣୁଥିଲେ । ଏହାକୁ ମନ୍ଥନ କରି ଯେଉଁ ଗୋଟେ ଦୁଇଟି ପାତ୍ର ଅମୃତ ବାହାରିଛି, ସେସବୁର ଅମୃତତ୍ତ୍ୱ ଯେ ପୁଣି ଏହି ସଂସାରର ମଙ୍ଗଳସାଧନ ପାଇଁ—ଏକଥା ସେମାନେ ମାନନାହାନ୍ତି ।

କାବ୍ୟର ରସକୁ ଯେମାନେ ସଂସାର ବିଷବୃକ୍ଷର ଅମୃତଫଳ ବୋଲି ହିଁ ଜାଣିଥିଲେ । ଆଜି ଯଦି ଆମେ ସଂସାରକୁ ଦୁଃଖମୟ କହିବାକୁ ମନରେ ଖେଦ ଅନୁଭବ କରୁ, ତଥାପି ଏ କଥା କଦାପି ଅସ୍ୱୀକାର କରିବୁ ଯେ, ବୃକ୍ଷର ଫଳର କାର୍ଯ୍ୟ ତାର ମୂଳକୁ ପରିପୁଷ୍ଟ କରିବା ନୁହେଁ । କାବ୍ୟ, ମନୁଷ୍ୟର ସଭ୍ୟତାବୃକ୍ଷର ଫଳ, ତାର ମୂଳ ମାଟିରୁ ରସ ଟାଣେ ବୋଲି ହିଁ ବୃନ୍ତ ବନ୍ଧି ରହିଛି । ମୂଳ ଯଦି ରସ ଟାଣିବା ବନ୍ଦ କରିଦିଏ, ଫଳ ଧରିବା ମଧ୍ୟ ବନ୍ଦ ହୋଇଯିବ । କିନ୍ତୁ ନିତାନ୍ତ ବୁଦ୍ଧି ବିପର୍ଯ୍ୟୟ ନହେଲେ ମୂଳର କାର୍ଯ୍ୟରେ ଫଳର କେତେ ସହାୟତା, ତାକୁ ଧରି ତା'ର ମୂଲ୍ୟାୟନର କଥା କେହି ମନରେ ଭାବେନି । ସେଇ ଫଳ ହିଁ କେବଳ ବୃକ୍ଷର ପୂର୍ଣ୍ଣତା ସାଧନ କରେ ଯାହା ମୁକୁଳ ଅବସ୍ଥାରୁ ଝରିପଡ଼େ ।

ଲୌକିକ ଜୀବନ ପାଇଁ ଯେ କାବ୍ୟରସର ଫଳ ନାହିଁ, ତାହା ନୁହେଁ । କିନ୍ତୁ ସେ ଫଳ ଏଇ ଜୀବନର ପୂର୍ଣ୍ଣତା ପାଇଁ ନୁହେଁ, ତାହା ମନୁଷ୍ୟର ମୁକ୍ତି ପାଇଁ ଲୌକିକ ଜୀବନର ଲୌକିକତାକୁ କାବ୍ୟରସର ଅଲୌକିକ ଧାରାରେ ଅଭିସିଞ୍ଚିତ କରେ ।

ଅନ୍ତର ହତେ ଆହରି ବଚନ
ଆନନ୍ଦ ଲୋକ କରି ବିରଚନ
ଗୀତରସଧାରା କରି ସିଞ୍ଚନ
ସଂସାର ଧୂଲିଜାଲେ ।

× × ×

ଧରଣୀର ତଲେ, ଗଗନେର ଗାୟ,
ସାଗରେର ଜଲେ, ଅରଣ୍ୟଛାୟ,
ଆରେକଟୁଖାନି ନବୀନ ଆଭାୟ
ରଙ୍ଗିନ କରିୟା ଦିବ ।

ସଂସାରମାଝେ ଦୁୟେକଟି ସୁର
ରେଖେଦିୟେ ଯାବ କରିୟା ମଧୁର,
ଦୁୟେକଟି କାଁଟା କରିଦିବ ଦୂର,
ତାର ପରେ ଛୁଟି ନିବ ।

'ପୁରସ୍କାର'ର କବିଙ୍କର ଏଇ କବି-କଥା ଆଲଙ୍କାରିକମାନଙ୍କର ମନର କଥା ।

କିନ୍ତୁ କବି ତ କେବଳ କାବ୍ୟସ୍ରଷ୍ଟା ନୁହନ୍ତି, ସେ ମଧ୍ୟ ସାମାଜିକ ମଣିଷ । ମଣିଷର ସୁଖ-ଦୁଃଖ, ଆଶା-ନିରାଶା, ପ୍ରଣୟ-ହିଂସା ତାଙ୍କର କାବ୍ୟର ବିଷୟ, ସେସବୁକୁ କେବଳ ରସସୃଷ୍ଟିର ଉପାଦାନ ରୂପେ ଦେଖିବା ସବୁବେଳେ ତାଙ୍କ ପକ୍ଷରେ ସମ୍ଭବ ନୁହେଁ । କବି ଭିତରେ ଯେଉଁ ସାମାଜିକ ମଣିଷଟି ଅଛି ସେ ମନୁଷ୍ୟର ସାମାଜିକ ଭଲମନ୍ଦ, ଆଶାନିରାଶାର ବିଚାରଠାରୁ କାବ୍ୟକୁ ସମ୍ପୂର୍ଣ୍ଣ ନିରପେକ୍ଷ ରହିବାକୁ ଦିଏ ନାହିଁ । ରସସୃଷ୍ଟି ଯେଉଁଠି ଚରମ ଅଭିବ୍ୟକ୍ତି ଲଭେ, ସେଠି କବିର ଏଇ ସାମାଜିକତା ଯୋଡ଼େଇ ହୋଇଯାଏ, ଯେପରି ସେକ୍‌ସପିୟରଙ୍କ ନାଟକରେ । ଯେଉଁଠି କବିର ସାମାଜିକତା ପ୍ରବଳ ହୋଇଉଠେ, କିନ୍ତୁ ରସସୃଷ୍ଟିର ପ୍ରାଚୁର୍ଯ୍ୟକୁ ବ୍ୟାହତ କରେ ନାହିଁ, ସେଇଠି ଏଇ ସାମାଜିକତାକୁ ଗୋଟେ ଉପୁରି ପାଉଣା ହିସାବରେ ଗଣ୍ୟ କରାଯାଏ, ଯେପରି ଟଲଷ୍ଟୟଙ୍କର 'ଯୁଦ୍ଧ ଓ ଶାନ୍ତି' । ଯେଉଁଠି ଉତ୍କଟ ସାମାଜିକତାକୁ ରସସୃଷ୍ଟିର ଶକ୍ତି ସମ୍ବରଣ କରି ରଖିପାରେ ନାହିଁ, ସେଠି ତାହା ରସର ପ୍ରବାହକୁ ବିଚ୍ଛିନ୍ନ କରି କାବ୍ୟତ୍ୱକୁ ଲଙ୍ଘନ କରେ, ଯେପରି ରମ୍ୟାଁ ରଲାଁଙ୍କର 'ଜ୍ୟାଁ କ୍ରିସ୍ତଫ୍' ।

କାବ୍ୟର କାର୍ଯ୍ୟ ଯେ ସତ୍ୟକୁ ସୁନ୍ଦର ମୂର୍ତ୍ତିମନ୍ତ କରିବା—ଏଇଟା ଊନବିଂଶ ଶତାବ୍ଦୀର ଆବିଷ୍କାର ଓ ଏହି ଶତାବ୍ଦୀର ବୈଜ୍ଞାନିକ ଆବିଷ୍କାରର ଗୋଟିଏ ଗୌଣ ଫଳ । ସେତିକିବେଳେ ବିଜ୍ଞାନ ବିଭିନ୍ନ ଦିଗରେ ଯେଉଁ ସବୁ ବିଚିତ୍ର ସତ୍ୟର ଆବିଷ୍କାର କରିଲା ଓ ତନ୍ମଧ୍ୟରୁ କେତେଗୁଡ଼ିକୁ ଘରକରଣା କାର୍ଯ୍ୟରେ ଲଗାଇ ଜୀବନଯାତ୍ରାର ଯେଉଁ ନୂତନ ଭଙ୍ଗୀ ସୃଷ୍ଟି କରିଲା, ସେଥିରୁ ସତ୍ୟ ଓ ସତ୍ୟାନୁସନ୍ଧାନ ପାଇଁ ମନୁଷ୍ୟର ଅସୀମ ଶ୍ରଦ୍ଧା ଜନ୍ମିଛି । ସତ୍ୟର ଏଇ 'ପ୍ରେଷ୍ଟିଜ୍' ଦେଇ ସକଳପ୍ରକାର ମାନସିକ ସୃଷ୍ଟିର 'ପ୍ରେଷ୍ଟିଜ୍' ବଢ଼ାଇବାର ଇଚ୍ଛା ଖୁବ୍ ସ୍ୱାଭାବିକ । ଏଇ ଇଚ୍ଛା କାବ୍ୟରସିକ ପାଖରେ ମଗ୍ନ—ତେଣୁ ମୂଳ-ଚୈତନ୍ୟ ଭିତରେ କାର୍ଯ୍ୟକରେ ଏପ୍ରକାର ମତ ସୃଷ୍ଟି ହୋଇଛି । କବି କିଟ୍‌ସ୍ ସତ୍ୟ ଓ ସୁନ୍ଦରର ଯେଉଁ ଅଦ୍ୱୈତବାଦ ପ୍ରତିଷ୍ଠା କରିଛନ୍ତି, ତାହା ସେ କରିଛନ୍ତି ଏଇ ବୈଜ୍ଞାନିକଯୁଗର କବି ପ୍ରତିନିଧି ଭାବରେ । ତା ନହେଲେ ଶୁଦ୍ଧ କବି

ଦୃଷ୍ଟିରୁ କୌଣସିମତେ ଗୋପନ ରହିନପାରେ, ସତ୍ୟ କାବ୍ୟର ଲକ୍ଷ୍ୟ ନୁହେଁ, ତାହା କାବ୍ୟର ଉପାଦାନ । ବସ୍ତୁ-ନିରପେକ୍ଷ ରସ ନାହିଁ ଏବଂ ବସ୍ତୁକୁ ସତ୍ୟଦୃଷ୍ଟିରେ ଦେଖିବାନୁଯାୟୀ ରସର ସୃଷ୍ଟି ଅନେକ ବେଶୀ ନିର୍ଭର କରେ । ରସ ଓ ସତ୍ୟର ଏଇ ସତ୍ୟସମ୍ବନ୍ଧରେ ଜନଗଣଙ୍କର ବୈଜ୍ଞାନିକ ମାୟାରେ ଦୃଷ୍ଟି ବିଭ୍ରମ ହୁଏ । କବି ରସ ଛଳରେ ଉପଦେଶ ଦିଅନ୍ତି— ଏକଥା ଯେପରି ଅଯଥାର୍ଥ, କାବ୍ୟ ରସଛଳରେ ସତ୍ୟକୁ ପ୍ରକାଶ କରେ, ଏହା ମଧ୍ୟ ଠିକ୍ ସେହିପରି ଅସତ୍ୟ । ଶିଳ୍ପୀ ତାର ମୂର୍ତ୍ତିକାରିଗରୀ ମାଧ୍ୟମରେ ପଥରକୁ ପ୍ରକାଶକରେ—ଏକଥା କେହି କହନ୍ତିନି । କିନ୍ତୁ କବି କାବ୍ୟ ମାଧ୍ୟମରେ ସତ୍ୟର ବିକାଶ କରନ୍ତି, ଏକଥା କାବ୍ୟରସିକ ମଧ୍ୟ କହିଥାନ୍ତି, ତାହାର କାରଣ ହେଲା—ଏଇ ବୈଜ୍ଞାନିକଯୁଗରେ ସତ୍ୟର ଆଇଡିଆକୁ କେନ୍ଦ୍ର କରି ମନୁଷ୍ୟର ମନର ଭାବ ସୃଷ୍ଟି ହୋଇଛି । ଏଇ 'ଭାବ'କୁ ହିଁ ରସମୂର୍ତ୍ତିରେ ପରିଣତ କରି ଅନେକ କବି କାବ୍ୟ ରଚନା କରିଛନ୍ତି । ଏ ଭାବ ଓ ରସ ନୂଆ । ଆଉ ନୂତନର ପ୍ରଥମ ଆବିର୍ଭାବରେ ତାକୁ ମନ ଦୂରାଇ ଗ୍ରହଣ କରିବା ମନୁଷ୍ୟର ସ୍ୱାଭାବିକ ମନୋଧର୍ମ ।

ଯୁଗେ ଯୁଗେ ମାନବମନରେ ଏଇ ପ୍ରକାର ଯେଉଁସବୁ ଭାବ ସୃଷ୍ଟି ହୁଏ, କବିଗଣ ସେମାନଙ୍କ କାବ୍ୟରେ ସେଇସବୁ ଯୁଗଭାବକୁ ରସରେ ରୂପାନ୍ତର କରନ୍ତି । ମାନବମନର ଯେଉଁ ସବୁ ଚିରନ୍ତନ 'ସ୍ଥାୟୀ' ଭାବ ଅଛି, ସବୁଯୁଗରେ କାବ୍ୟର ସେସବୁ ହିଁ ପ୍ରଧାନ ଅବଲମ୍ବନ । କିନ୍ତୁ ଯେଉଁସବୁ ସଞ୍ଚାରୀଭାବ କାବ୍ୟରସକୁ ଗାଢ଼କରେ, ମନୁଷ୍ୟର ବିଚିତ୍ର ଜୀବନପ୍ରବାହ ସେଗୁଡ଼ିକୁ ନୂତନ ନୂତନ ଭାବରେ ସୃଷ୍ଟିକରି ଚାଲିଛି । ଯୁଗେ ଯୁଗେ ଯେଉଁସବୁ ସଞ୍ଚାରୀଭାବ ଜନ୍ମଲାଭ କରେ, ପ୍ରତି ଯୁଗର କାବ୍ୟରସିକର ମନ ସେସବୁକୁ ରସମୂର୍ତ୍ତି ଗଢ଼ିବାରେ ଉନ୍ମୁଖ ଥାଏ । ଯେଉଁ କବିର କାବ୍ୟରେ ଏଇ ଜୀବନ ଭାବ ନୂତନ ରସରେ ପରିଣତ ହୁଏ, ସେ ହିଁ ସେଇ ଯୁଗର ଆଧୁନିକ କବି । ପୁରାତନ ରସ ବି ଏଇ ନୂତନ ଅନୁଘାତରେ ନବତ୍ୱ ଲଭ କରେ ।

କାବ୍ୟର ବାଣୀ ସେଥିରେ ପ୍ରାଚୀନ ହୋଇ ମଧ୍ୟ ପୁରାତନ ହୁଏ ନାହିଁ । ଯୁଗ ପରେ ଯୁଗ ରସର ନୂତନ ସୃଷ୍ଟି ହୋଇ ଚାଲିଥାଏ ।

ଅତୋ ହ୍ୟନ୍ୟତମେନାପି ପ୍ରକାରେଣ ବିଭୂଷିତା
ବାଣୀ ନବତ୍ୱମାୟାତି ପୂର୍ବାର୍ଥାନ୍ୱୟବତ୍ୟପି ॥ (୧୭)

'ପୂର୍ବତନ କବିମାନଙ୍କର ପ୍ରାଚୀନ ବାଣୀ ମଧ୍ୟ ନୂତନ ଭଙ୍ଗିମାର ଆଭରଣଯୁକ୍ତ ହୋଇ ନବୀନତ୍ୱ ଲାଭକରେ ।' ଜୀବନ ଯେଉଁସବୁ ନୂତନ 'ଭାବ'ର ଜନ୍ମ ଦିଏ, ସେସବୁର ରସମୂର୍ତ୍ତି ଗଢ଼ିବାପାଇଁ ଶିଳ୍ପୀଙ୍କର ପ୍ରଜ୍ଞା ଅଭାବ ନହୁଏ, ତେବେ ନୂତନ କାବ୍ୟସୃଷ୍ଟିର ବିଘ୍ନର ଆଶଙ୍କା ନାହିଁ ।

ନ କାବ୍ୟାର୍ଥବିରାମୋଽସ୍ତି ଯଦି ସ୍ୟାତ୍ ପ୍ରତିଭାଗୁଣଃ ॥ (୧୮)

କାରଣ—

ବାଚସ୍ପତିସହସ୍ରାଣାଂ ସହସ୍ରୈରପି ଯତ୍ନତଃ
ନିବଦ୍ଧାପି କ୍ଷୟଂ ନୈତି ପ୍ରକୃତିର୍ଜଗତାମିବ ॥ (୧୯)

ଯେପରି ଜଗତ ପ୍ରକୃତି କଳ୍ପକଳ୍ପାନ୍ତର ବିଚିତ୍ର ବସ୍ତୁ-ପ୍ରପଞ୍ଚ ସୃଷ୍ଟି କରିଚାଲିଛି, ତଥାପି ତାର ନୂତନ ସୃଷ୍ଟିର ଅନ୍ତ ନାହିଁ, ଠିକ୍ ସେହିପରି ସହସ୍ର ସହସ୍ର ବାଣୀସମ୍ରାଟ କବିର ରସସୃଷ୍ଟିରେ ବି ରସର ନୂତନ ଉନ୍ମେଷର ଶେଷ ହୁଏନାହିଁ, କାରଣ, ମାନବମନରେ 'ଭାବ' ସୃଷ୍ଟିର ଶେଷ ନାହିଁ ।

କିନ୍ତୁ ଜୀବନ ଯେପରି ନୂତନ ନୂତନ 'ସଞ୍ଚାରୀଭାବ' ସୃଷ୍ଟି କରେ, ସେହିପରି ପୁରାତନ ସଞ୍ଚାରୀଭାବକୁ ଧ୍ୱଂସ ମଧ୍ୟ କରେ । ଯେଉଁ ସବୁ ଭାବ ମନର ମୌଳିକ ଉପାଦାନ ନୁହେଁ, ଜଟିଳ ଯୌଗିକ ସୃଷ୍ଟି—ଜୀବନର ବିଶେଷ ପାରିପାର୍ଶ୍ୱିକ ମଧ୍ୟରେ ସେଗୁଡ଼ିକର ଜନ୍ମହୁଏ ଓ ତାହାର ପରିବର୍ତ୍ତନରେ ଏଗୁଡ଼ିକର ବିଲୋପ ଘଟେ । ଏସବୁ ହେଉଛି ମନର 'ଅନ୍‌ଷ୍ଟେବଲ୍ କମ୍ପାଉଣ୍ଡ' । ସେଥିପାଇଁ ପ୍ରାଚୀନ କବିମାନଙ୍କର କାବ୍ୟର ବହୁଳାଂଶ ଆମ ମନର ରସକୁ ଠିକ୍ ସ୍ପର୍ଶ କରିପାରେନି, ଯାହା ପ୍ରାଚୀନ ଯୁଗର ଲୋକଙ୍କ ମନକୁ ଆଲୋଡ଼ିତ କରିପାରୁଥିଲା । ଯେଉଁ ଭାବ ଉପରେ ସେଇ ରସର ପ୍ରତିଷ୍ଠା ଥିଲା, ଆମ ମନରୁ ସମ୍ପୂର୍ଣ୍ଣ ଲୋପ ପାଇନଥିଲେ ବି

---

୧୭ । ଧ୍ୱନ୍ୟାଲୋକ, ୪/୨
୧୮ । ଧ୍ୱନ୍ୟାଲୋକ, ୪/୬
୧୯ । ଧ୍ୱନ୍ୟାଲୋକ, ୪/୧୦

ଠିକ୍ ସେହିପରି ନାହିଁ । ଏହା କଣ ଅସ୍ୱୀକାର କରାଯାଇପାରିବ ଯେ ମଧ୍ୟଯୁଗୀୟ ଖ୍ରୀଷ୍ଟାନ କାବ୍ୟରସିକ ଦାନ୍ତେଙ୍କ 'ଡିଭାଇନ୍ କମେଡ଼ି'ରୁ ଯେଉଁ ରସ ପାଉଥିଲେ ବର୍ତ୍ତମାନ ଯୁଗର ଖ୍ରୀଷ୍ଟାନ୍ ଅଖ୍ରୀଷ୍ଟାନ କୌଣସି କାବ୍ୟ-ରସିକ ଠିକ୍ ସେହି ରସ ପାଆନ୍ତି ନାହିଁ । ସେହି କାବ୍ୟରେ ଯାହା କିଛି 'ସ୍ଥାୟୀ ଭାବ'ର ରସରେ ରୂପାନ୍ତର ଘଟିଛି, ସେତିକ ହିଁ ଆମେ ଆସ୍ୱାଦନ କରୁ । ତାହାର ଯେଉଁ 'ସଞ୍ଚାରୀ' ଭାବର ଆସ୍ୱାଦନ ମଧ୍ୟଯୁଗର ପାଠକମାନଙ୍କ ପାଖରେ ସମ୍ଭବ ହେଉଥିଲା, ସେଥିରୁ ଏବେ ଆମେ ବଞ୍ଚିତ ।

ଯେପରି ପ୍ରାଚୀନ ଯୁଗର ଅନେକ କାବ୍ୟ ଆମ ମନରେ ଆଉ ରସ ସୃଷ୍ଟି କରେନାହିଁ, ସେହିପରି ଆମର ଆଧୁନିକ ଯୁଗର ଅନେକ କାବ୍ୟ ଏବେ ଆମ ମନକୁ ଯେଉଁ ରସ ଯୋଗାଉଛି, ଭବିଷ୍ୟତରେ ଉତ୍ତର-ପୁରୁଷମାନେ ସେଥିରୁ ଠିକ୍ ସେଇ ରସ ପାଇ ନପାରନ୍ତି । କାରଣ ସେମାନଙ୍କର ଭାବଜଗତ ଠିକ୍ ଆମ ଭାବଜଗତ ସହ ସମାନ ନଥିବ ।

ଗୋଟିଏ ଚରମ ଦୃଷ୍ଟାନ୍ତ ନିଆଯାଉ —

ମନେହଲ ଏ ପାଖାର ବାଣୀ
ଦିଲ ଆନି
ଶୁଧୁ ପଲକେର ତରେ
ପୁଲକିତ ନିଶ୍ଚଲେର ଅନ୍ତରେ ଅନ୍ତରେ
ବେଗେର ଆବେଗ ।
ପର୍ବତ ଚାହିଲ ହତେ ବୈଶାଖେର ନିରୁଦ୍ଦେଶ ମେଘ;
ତରୁଶ୍ରେଣୀ ଚାହେ, ପାଖା ମେଲି
ମାଟିର ବନ୍ଧନ ଫେଲି,
ଓଇ ଶବ୍ଦରେଖା ଧରେ ଚକିତେ ହଇତେ ଦିଶାହାରା,
ଆକାଶେର ଖୁଁଜିତେ କିନାରା ।

× × ×

ଶୁନିତେଛି ଆମି ଏଇ ନିଃଶବ୍ଦେର ତଲେ
ଶୂନ୍ୟେ ଜଲେ ସ୍ଥଲେ
ଅମନି ପାଖାର ଶବ୍ଦ ଉଦ୍ଦାମ ଚଞ୍ଚଲ ।

ତୃଣ ଦଳ୍
ମାଟିର ଆକାଶ-'ପରେ ଝାପଟିଛେ ଡାନା,
ମାଟିର ଆଁଧାର-ନୀଚେ କେ ଜାନେ ଠିକାନା-
ମେଲିତେଛେ ଅଙ୍କୁରେର ପାଖା
ଲକ୍ଷ ଲକ୍ଷ ବୀଜେର ବଳାକା ।

ଏଇ ଅଦ୍ଭୁତ କାବ୍ୟ ଆଧୁନିକ କାବ୍ୟରସିକ ଚିତ୍ତର ପ୍ରତି ଅଣୁକୁ ଯେପରି ରସର ଆବେଗରେ ଆବିଷ୍ଟ କରେ, ତାହାର ଗୋଟିଏ ପ୍ରଧାନ ଉପାଦାନ—'ଗତି' ଓ 'ବେଗ'ର ଏ ଯୁଗ ଲୋକଙ୍କ ମନରେ ଭାବର ଆବେଗ ସୃଷ୍ଟି । 'ଅଲକ୍ଷିତ ଚରଣର ଅକାରଣ ଅବାରଣ ଚଲ' ଯେପରି ଆଜିର କବିଙ୍କୁ ଉତଳା କରି ତୋଳିଛି—ତାହାର ମୂଳରେ ଅଛି ଏ ଯୁଗର ମାନବମନରେ ବିଶ୍ୱପ୍ରକୃତିର ଗୋଟିଏ ବିଶେଷରୂପ କଳ୍ପନା । ଏହି ଭାବ ଓ କଳ୍ପନା ଯେ ମନୁଷ୍ୟ ମନରେ ଚିରସ୍ଥାୟୀ ହେବ, ତାହା ଭାବିବାର କୌଣସି କାରଣ ନାହିଁ । ବିଶ୍ୱପ୍ରକୃତିକୁ ଆଜି ମନୁଷ୍ୟ ଯେଉଁ ଦୃଷ୍ଟିରେ ଦେଖୁଛି, ସେଇ ଦୃଷ୍ଟି ଯେତେବେଳେ ବଦଳିବ, ସେତେବେଳେ ଏଇ ଭାବ ଓ କଳ୍ପନାର ପରିବର୍ତ୍ତନ ହେବ । 'ବଳାକା'ର 'ଝଞ୍ଜାମଦରସରେ ମତ୍ତ' ପକ୍ଷାର ଧ୍ୱନିରେ ଆମ ମନରେ ରସର ଯେଉଁ ବିସ୍ମୟ ଜନ୍ମିଛି, ସେଦିନର କାବ୍ୟରସିକମାନେ ତାହାର ଅନେକ ଆସ୍ୱାଦ ଜାଣିବେ ନାହିଁ । ଆମମାନଙ୍କର ଅନାସ୍ୱାଦିତ କେଉଁ କାବ୍ୟ-ରସରେ ଆସ୍ୱାଦ ସେମାନେ ପାଇବେ, ସେ ବିଷୟରେ ସେମାନଙ୍କୁ ଈର୍ଷା କରିବୁନି । ଏପ୍ରକାର କାବ୍ୟର ପୂର୍ଣ୍ଣ ଆସ୍ୱାଦନରୁ ବଞ୍ଚିତ ହେବାର କ୍ଷତି ସେମାନଙ୍କର ପୂରଣ ହେବ କି ନାହିଁ, ତାହା କିଏ ଜାଣେ ।



# ସାହିତ୍ୟ

ଉପନିଷଦ୍‌ର ଗଳ୍ପରେ ଅଛି, ବ୍ରହ୍ମନିଷ୍ଠ ଋଷି ଗୃହସ୍ଥାଶ୍ରମ ଛାଡ଼ି ପ୍ରବ୍ରଜ୍ୟା ନେବାର ଇଚ୍ଛା ପ୍ରକାଶ କରି ନିଜର ଧନସମ୍ପତ୍ତି ତାଙ୍କର ଦୁଇ ପତ୍ନୀଙ୍କ ମଧ୍ୟରେ ଭାଗ କରିଦେବାର ସଂକଳ୍ପ ଜଣାଇବାରୁ ଜଣେ ପତ୍ନୀ ପ୍ରଶ୍ନ କଲେ—ବିତ୍ତପୂର୍ଣ୍ଣ ସମଗ୍ର ପୃଥିବୀ ଯଦି ମୁଁ ପାଏ, ସେଥିରେ କଣ ଅମୃତତ୍ୱ ଲାଭ କରିପାରିବି ? ଋଷି ଉତ୍ତର ଦେଲେ—ନା, ଅନ୍ୟ ସମ୍ପତ୍ତିଶାଳୀ ଲୋକଙ୍କ ପରି ସୁଖରେ ଜୀବନ କଟାଇ ପାରିବ, ବିତ୍ତଦ୍ୱାରା ତ କେବେ ଅମୃତତ୍ୱ ମିଳେନା । ମୈତ୍ରେୟୀଙ୍କର ବିଖ୍ୟାତ ପ୍ରତ୍ୟୁତ୍ତର ସମସ୍ତଙ୍କୁ ଜଣାଅଛି—'ଯେନାହଂ ନାମୃତା ସ୍ୟାଂ କିମହଂ ତେନ କୁର୍ଯାମ୍'—ଯାହା-ଦ୍ୱାରା ଅମୃତତ୍ୱ ମିଳିବନାହିଁ ସେଥିରେ ମୋର କି ପ୍ରୟୋଜନ ? ଋଷିଙ୍କର ଅନ୍ୟପତ୍ନୀ କାତ୍ୟାୟନୀ ସ୍ୱାମୀଙ୍କର ପ୍ରସ୍ତାବରେ କଣ କହିଥିଲେ, ଉପନିଷଦ୍‌ରେ ତାହାର ଉଲ୍ଲେଖ ନାହିଁ । ନିଶ୍ଚୟ ଅମୃତତ୍ୱ ମିଳେନାହିଁ ବୋଲି ଧନସମ୍ପତ୍ତି ତୁଚ୍ଛ—ଏକଥା ସେ କହିନାହାନ୍ତି ।

ଯାଜ୍ଞବଲ୍‌କ୍ୟଙ୍କର ଦୁଇ ପତ୍ନୀ କାତ୍ୟାୟନୀ ଓ ମୈତ୍ରେୟୀ ମନୁଷ୍ୟ ସଭ୍ୟତାର ଦୁଇ ପର୍ଯ୍ୟାୟର ପ୍ରତୀକ । ପୃଥିବୀର ଅନ୍ୟସବୁ ଜୀବଜନ୍ତୁଙ୍କ ପରି ଶରୀର ଓ ମନକୁ ନେଇ ମଣିଷ । ଆମେ ଯାହାକୁ ସଭ୍ୟତା ନାଁ ଦେଇଛୁ ତାହାର ବେଶୀ ଭାଗ ଓ ଅନେକ ସଭ୍ୟତାର ପ୍ରାୟ ସବୁକିଛି ଶରୀରର ପ୍ରୟୋଜନ ଓ ବିଳାସର ଦାବିପୂରଣ କରିବାର କୌଶଳ ଘର-ଦ୍ୱାର, ପୋଷାକପରିଚ୍ଛଦ, ଅସ୍ତ୍ରଶସ୍ତ୍ର, ରେଲଷ୍ଟିମର୍, ମୋଟର, ଏରୋପ୍ଲେନ୍, ଟେଲିଫୋନ୍, ଟେଲିଭିଜନ୍ ବା କମ୍ପ୍ୟୁଟର୍, ଯନ୍ତ୍ରପାତି, କୃଷିବାଣିଜ୍ୟ—ମୁଖ୍ୟତଃ ଏଇ କୌଶଳ ଛଡ଼ା ଆଉ କିଛି ନୁହେଁ । ଏସବୁର ଆବିଷ୍କାର ପାଇଁ ମନୁଷ୍ୟର ଯେଉଁ ବୁଦ୍ଧି ଓ ମନ କାର୍ଯ୍ୟ କରିଛି ତାହାର ଶକ୍ତି ଓ ଜଟିଳତା ବିସ୍ମୟକର । କିନ୍ତୁ ତାହାର ଲକ୍ଷ୍ୟ ସେଇ ପ୍ରେରଣାର ଲକ୍ଷ୍ୟ-ଠାରୁ ଭିନ୍ନ ନୁହେଁ, ଯାହା ବଳରେ ପକ୍ଷୀମାନେ ବସା ବାନ୍ଧନ୍ତି,

ମାଙ୍କଡ଼ସା ଶିକାର ଧରିବା ପାଇଁ ଆଶ୍ଚର୍ଯ୍ୟ କୌଶଳ ଦେଖାଏ, ଜଳ-ପକ୍ଷୀମାନେ ପ୍ରତି ଶୀତରେ ଉତ୍ତର ଧ୍ରୁବୋପରୁ ମଧ୍ୟ ଚିଲିକାରେ ଆସି ପହଞ୍ଚିଯାଆନ୍ତି । କିନ୍ତୁ ସଭ୍ୟତାର ଏଇ କାତ୍ୟାୟନୀ-ମୂର୍ତ୍ତି ତାର ସମଗ୍ର ପରିଚୟ ନୁହେଁ । ପୃଥିବୀରେ ପ୍ରାଣର ଆବିର୍ଭାବ ଆଜି ବି ଅଜ୍ଞାତ ରହସ୍ୟ । ତା'ଠାରୁ ଗୂଢ଼ ରହସ୍ୟ ପ୍ରାଣୀର ଶରୀରରେ ମନର ବିକାଶ । ପ୍ରାଣର ରକ୍ଷା ଓ ପରିପୁଷ୍ଟି ପାଇଁ ମନ ଯେ ପରମ ସହାୟ ଓ ସେଥିପାଇଁ ତାର ଚେଷ୍ଟା ଯେ ବ୍ୟାପକ ଓ ବିଚିତ୍ର—ଏହା ଅତି ସ୍ପଷ୍ଟ । ମନକୁ ପ୍ରାଣର ଯନ୍ତ୍ର ବୋଲି କେବଳ କଳ୍ପନା କରି ଜଟିଳକୁ ସହଜବୋଧ୍ୟ କରିବାର ପ୍ରଲୋଭନ ବି ସ୍ୱାଭାବିକ । କିନ୍ତୁ ଏ କଥାଟି ସତ ଯେ, ପ୍ରାଣର କାର୍ଯ୍ୟରେ କେବଳ ବ୍ୟୟ ହୋଇ ମନ ନିଃଶେଷ ହୋଇଯାଏ ନାହିଁ । ମନୁଷ୍ୟର ଏଇ ଅବଶେଷ ମନ ଶରୀର ଓ ପ୍ରାଣର ପ୍ରୟୋଜନରେ ନୁହେଁ, ଅନ୍ୟ ଏକ ପ୍ରେରଣାରେ ନିଜସ୍ୱ ସୃଷ୍ଟି କରିଚାଲିଛି ଯାହାର ଲକ୍ଷ୍ୟ ମନର ତୃପ୍ତି ଓ ଆନନ୍ଦ ଛଡ଼ା ଅନ୍ୟ କିଛି ନୁହେଁ । ପ୍ରାଣ ଓ ଶରୀରର ଯାହା ପ୍ରୟୋଜନରେ ଲାଗେ, ତାହା ଯଦି ଲୌକିକ ହୁଏ, ତେବେ ମନର ଏ ସୃଷ୍ଟି ଅଲୌକିକ, ସେଇ ପ୍ରୟୋଜନ ପୂରଣ ପାଇଁ ଯେଉଁ ଚେଷ୍ଟା ତାହା ଯଦି କାର୍ଯ୍ୟ ହୁଏ, ମନର ଏଇ ସୃଷ୍ଟି ହେବ କ୍ରୀଡ଼ା ମାତ୍ର । 'ଲୀଳା' କହିଲେ ହୁଏତ ଭଦ୍ର ଓ ଗମ୍ଭୀର ଶୁଣାଯିବ, କିନ୍ତୁ ସ୍ୱରୂପ ବଦଳିବ ନାହିଁ ।

କ୍ରୀଡ଼ା ହେଉ କି ଲୀଳା ହେଉ, ସଭ୍ୟତାର ଏଇ ମୈତ୍ରେୟୀ-ମୂର୍ତ୍ତି ତାହାର ଅନ୍ୟମୂର୍ତ୍ତି ପରି ସ୍ୱାଭାବିକ । ଶରୀର ଓ ପ୍ରାଣର ପ୍ରୟୋଜନରେ ମନୁଷ୍ୟ ମନର ଯେଉଁ ବିମାନ ସୃଷ୍ଟି, ତାହାକୁ ଯଦି ବିନା ଦ୍ୱିଧାରେ ସ୍ୱାଭାବିକ ବୋଲି ମାନିନେବା, ତେବେ ମନର ତୃପ୍ତି ଓ ଆନନ୍ଦର ପ୍ରୟୋଜନରେ ତାହାର ଯେଉଁ ସୃଷ୍ଟି, ତାହାକୁ ବି ସମାନ ସ୍ୱାଭାବିକ ବୋଲି ମାନିନେବା କୌଣସି ବାଧା ନାହିଁ । ମନର ଏଇ ଖେଳର ବୀଜ ପଶୁପକ୍ଷୀଙ୍କ ମଧ୍ୟରେ ବି ଅଛି । ଆଧୁନିକ ଜୀବବିଜ୍ଞାନୀମାନେ କହନ୍ତି ପଶୁପକ୍ଷୀଙ୍କର ଗତିବିଧି ସମ୍ପୂର୍ଣ୍ଣ ସେମାନଙ୍କର ଶରୀରର ପ୍ରୟୋଜନରେ ନୁହେଁ, ସେମାନେ ବେଳେବେଳେ ଏପରି ସବୁ ଚେଷ୍ଟା କରନ୍ତି ଯାହାର ଫଳ କେବଳ ମନର ତୃପ୍ତି ଓ ଆନନ୍ଦ । ପଶୁପକ୍ଷୀଙ୍କ ମନ ତୁଳନାରେ

ମନୁଷ୍ୟର ମନ ବସ୍ତି । ସୁତରାଂ ସେଇ ମନର ଲୌକିକ ସୃଷ୍ଟି ଯେପରି ବିମାନ ଅଲୌକିକ ସୃଷ୍ଟି ମଧ ସେହିପରି ବିଚିତ୍ର ।

ଆମେ ଯାହାକୁ ସାହିତ୍ୟ କହୁ, ତାହା ସଭ୍ୟତାର ଏକ ମୈତ୍ରେୟୀ-ମୂର୍ତ୍ତିର ଗୋଟିଏ ଦିଗ । ଯେପରି ତାହାର ଅନ୍ୟ ନାନା ଦିଗ—ଛବି, ଭାସ୍କର୍ଯ୍ୟ, ସଙ୍ଗୀତ, କର୍ମଜଗତ୍ର ଓ ଶୁଦ୍ଧ ଜ୍ଞାନଚର୍ଚ୍ଚା । ସାହିତ୍ୟର ଏହି କଥା ମନେରଖିଲେ ତାହାର ସ୍ୱରୂପ ଓ ଆଦର୍ଶ ନେଇ ଯାହାସବୁ ବିତର୍କ, ତାହାର ଆଲୋଚନା ଓ ସମାଧାନର ସୁବିଧା ହୁଏ । ଆଧୁନିକ ଯୁଗରେ ନାନା ଭାବରେ ଏଇ ପ୍ରଶ୍ନ ଉଠୁଛି ଯେ, ସାହିତ୍ୟର ଲକ୍ଷ୍ୟ କଣ ? ସାମାଜିକ ଜୀବନର ପୁଷ୍ଟି ଓ ମଙ୍ଗଳ କଣ ତା'ର ଲକ୍ଷ୍ୟ, ନା ତାହାର କାର୍ଯ୍ୟ କେବଳ ଗୋଟିଏ ପ୍ରକାର ଆନନ୍ଦ ଦେବା, ଯାହାର ନାମ ସାହିତ୍ୟିକ ଆନନ୍ଦ । ଆଉ ଯଦି ତାହାହିଁ ହୋଇଥାଏ ତାହେଲେ ତାର ମୂଲ୍ୟ କଣ ? ପ୍ରାଚୀନ ଯୁଗରେ ମଧ୍ୟ ଏହି ତର୍କ ଉଠିଛି । ଆମ ଦେଶର ଆଳଙ୍କାରିକମାନଙ୍କ ମଧ୍ୟରୁ କେତେଜଣ କହିଛନ୍ତି ଯେ, କାବ୍ୟର ଉଦ୍ଦେଶ୍ୟ ଲୋକଙ୍କୁ କର୍ତ୍ତବ୍ୟ-ଅକର୍ତ୍ତବ୍ୟର ଉପଦେଶ ଦେବା, ଯେପରି ରାମାୟଣ ଉପଦେଶ ଦିଏ ଯେ ରାମଙ୍କ ପରି ହୁଅ, ରାବଣ ପରି ନୁହେଁ । କିନ୍ତୁ କାବ୍ୟର ଉପଦେଶ ଗୁରୁମହାଶୟଙ୍କ ଶୁଷ୍କ ଉପଦେଶ ନୁହେଁ, କାନ୍ତାର ଉପଦେଶ ପରି ମଧୁର । ଆଶା କରାଯାଏ ଯେ ଏହି ସୌଭାଗ୍ୟ-ବାନ୍ ଆଳଙ୍କାରିକମାନଙ୍କର ପ୍ରିୟବାଦିନୀ କାନ୍ତାଗଣ ସବୁବେଳେ ମଧୁର ଉପଦେଶ ଦେଉଥିଲେ । ସେ ଯାହାହେଉ, ଏମାନଙ୍କ କଥା ହେଲା, ସୁକବି ଶାସ୍ତ୍ରପରି କାବ୍ୟ ଉଚିତ ଅନୁଚିତ କେବଳ ଜଣାଇଦିଏ ନାହିଁ, ଏପରି ଚିତ୍ର ଓ ଚରିତ୍ର ସବୁ ସୃଷ୍ଟି କରେ, ଯେଉଁଥିରେ ପାଠକର ମନ ମଙ୍ଗଳ ଆଡ଼କୁ ଉନ୍ମୁଖ ଓ ଅମଙ୍ଗଳ ଦିଗରେ ବିମୁଖ ହୁଏ । ଏହି କାର୍ଯ୍ୟ ହିଁ କାବ୍ୟର ଲକ୍ଷ୍ୟ । ଏହି ମତକୁ ଉପହାସ କରି ଅନ୍ୟ କେତେକ ଆଳଙ୍କାରିକ ଯେପରି 'ଦଶରୂପକ' ରଚୟିତା ଧନଞ୍ଜୟ କହିଥିଲେ ଯେଉଁମାନେ ଅମୃତନିଷ୍ୟନ୍ଦୀ କାବ୍ୟରେ କି ଉପଦେଶ ଖୋଜନ୍ତି ସେମାନେ ସାଧୁଲୋକ ହୋଇପାରନ୍ତି କିନ୍ତୁ ଅଳ୍ପବୁଦ୍ଧି, ଅର୍ଥାତ୍ କାବ୍ୟର ଲକ୍ଷ୍ୟ— ପାଠକକୁ କାବ୍ୟପାଠ୍ୟଜନିତ ବିଶେଷ ଆନନ୍ଦଦାନ କେବଳ, ଆଉ କିଛି ନୁହେଁ ।

ଏଇ ମତବିରୋଧର ଆଲୋଚନା ବେଳେ ପ୍ରଥମରୁ ଗୋଟିଏ କଥା ମନେରଖିବା ଦରକାର, ଯାହା ସ୍ୱତଃସିଦ୍ଧ, କିନ୍ତୁ ଏଇ ପ୍ରସଙ୍ଗରେ ତାହା ସବୁବେଳେ ମନେ ନଥାଏ । ସାହିତ୍ୟ କିମ୍ବା କାବ୍ୟ ମତବାଦୀମାନଙ୍କର କଳ୍ପିତ କୌଣସି ବସ୍ତୁ ନୁହେଁ । ସାହିତ୍ୟିକ ଓ କବିର ପ୍ରତିଭା ଯାହା ସୃଷ୍ଟି କରେ ଏବଂ ସାହିତ୍ୟ ଓ କାବ୍ୟ ଭାବେ ବିଦଗ୍ଧ ସମାଜରେ ଯାହା ଗୃହୀତ ହୁଏ, ସେଇ ବସ୍ତୁର ପ୍ରକୃତି ଓ ଲକ୍ଷ୍ୟ ନେଇ ଏଇ ଆଲୋଚନା । ଏଇ କଥା ମନେରଖି ବିଚାର କଲେ ସହଜରେ ଦେଖାଯାଏ ଶ୍ରେଷ୍ଠ ସାହିତ୍ୟ ଓ କାବ୍ୟ ବୋଲି ଯାହା ସ୍ୱୀକୃତ, ତାହା ମଧ୍ୟରେ ଏପରି ଅନେକ ଅଛି, ଯାହା ଭିତରେ ସାମାଜିକ ମଙ୍ଗଳର ଲକ୍ଷ୍ୟ କୌଣସିମତେ ଖୋଜିପାଇବା ସମ୍ଭବ ନୁହେଁ । ରାମାୟଣ କି ମହାଭାରତରେ କବିର ଲକ୍ଷ୍ୟ ଥିଲା ସମାଜର ମଙ୍ଗଳ, ଏଇ ଯୁକ୍ତି କରାଯାଇପାରେ । ରଘୁବଂଶ କି ଶକୁନ୍ତଳାରେ ଏ ଲକ୍ଷ୍ୟ ଆବିଷ୍କାର କରିବା ହୁଏତ ଅସମ୍ଭବ ନୁହେଁ । କିନ୍ତୁ ଋତୁସଂହାର ଓ ମେଘଦୂତ ବି ତ କାବ୍ୟ । ଆଶା କରାଯାଏ, ଏକଥା ଅନ୍ତତଃ କେହି କହିବେନି ଯେ, ଯକ୍ଷର ବିରହବର୍ଣ୍ଣନାରେ କାଳିଦାସଙ୍କ ଉଦ୍ଦେଶ୍ୟ ଥିଲି ଭାଗ୍ୟବିଧାତା ସଙ୍ଗେ ଉଦ୍ଧତ ବ୍ୟବହାରଠାରୁ ଲୋକମାନଙ୍କୁ ନିବୃତ୍ତ କରିବା ଓ ମେଘଦୂତ ପାଠର ଫଳ ସେଇ ଉପଦେଶ ଲାଭ । 'କାଦମ୍ବରୀ' କିମ୍ବା Alice in the Wonderland ର କି ଉପଦେଶ ? 'My heart aches, and a drowsy numbness pains my sense.' 'ହୃଦୟ ଆମାର ନାଚେରେ ଆଜିକେ ମୟୂରେର ମତୋ ନାଚେରେ'—କେଉଁ ଉପଦେଶ ବା ମଙ୍ଗଳ ଏହାର ଲକ୍ଷ୍ୟ ? ମୋଟ କଥା ହେଲି, ସାହିତ୍ୟ ଓ କାବ୍ୟର ଲକ୍ଷ୍ୟ ସମାଜର ହିତ ସାଧନ, ତେବେ ଅତ୍ୟନ୍ତ ମନୋରମ ଭାବେ, ଏ ମତ ପ୍ରକୃତପକ୍ଷେ କାବ୍ୟପରୀକ୍ଷାର ଫଳ ନୁହେଁ, ତଥ୍ୟକୁ ଭୁଲିଯାଇ ଗୋଟିଏ ମନଗଢ଼ା ତତ୍ତ୍ୱ ।

ଏହାର ଉତ୍ତରରେ କୁହାଯାଇପାରେ ଯେ, ଏଗୁଡ଼ିକ ବ୍ୟତିକ୍ରମ । ଚିତ୍ତକୁ ମନୋହାରୀ କରିବା ହିଁ କାବ୍ୟ ଓ ସାହିତ୍ୟର ଲକ୍ଷ୍ୟ । କିନ୍ତୁ ମନୋହରଣର କୌଶଳ ଖୁବ୍ ସାର୍ଥକ ହେଲେ ସେହି ଦାବିରେ ରଚନାଟି କାବ୍ୟ ଓ ସାହିତ୍ୟ ବୋଲି ଚଳିଯାଏ, ମହତ୍ତ୍ୱର ଆଧିକ୍ୟ ଯୋଗୁ

ତା ଭିତରେ ଯେ ଔଷଧ ନାହିଁ, ସେଥିପ୍ରତି ଦୃଷ୍ଟି ନଥାଏ । ଏଇ ହିତବାଦ, ଯାହା ବଳରେ ପ୍ରାଚୀନପନ୍ଥୀମାନେ ସେଥିରେ ଆବଦ୍ଧ ନୁହନ୍ତି । ହିତବାଦୀ ଯଦି ସାମାଜିକ ଦିଗରୁ ସ୍ଥିତିର ପକ୍ଷପାତୀ ହୁଅନ୍ତି, ତାଙ୍କର ଆଦର୍ଶ ସାହିତ୍ୟର ନାମ ହେବ ସତ୍-ସାହିତ୍ୟ, ଆଉ ସେ ଯଦି ପରିବର୍ତ୍ତନ ବା ଗତିର ପକ୍ଷ ନିଅନ୍ତି, ତାଙ୍କ ଆଦର୍ଶ ସାହିତ୍ୟର ନାମ ହେବ ପ୍ରଗତି-ସାହିତ୍ୟ, କିନ୍ତୁ ସ୍ଥିତିବାଦୀ ଓ ଗତିବାଦୀ ସାହିତ୍ୟବିଚାରରେ ଦୁଇଜଣଙ୍କର ଦୃଷ୍ଟିଭଙ୍ଗୀ ଏକ ପ୍ରକାର, ତାହା ହେଉଛି—'ଯାହାର ଲକ୍ଷ୍ୟ ଓ ଫଳ ସାମାଜିକ ମଙ୍ଗଳ ନୁହେଁ, ତାହା ଯଥାର୍ଥ ଶ୍ରେଷ୍ଠ ସାହିତ୍ୟ ନୁହେଁ ।'

ସୁତରାଂ ପ୍ରଶ୍ନଉଠେ ମନୁଷ୍ୟର ସବୁ ଚେଷ୍ଟାର ଲକ୍ଷ୍ୟ କାହିଁକି ହେବ ସମାଜର ମଙ୍ଗଳ ସାଧନ । ପରୀକ୍ଷା କରିଲେ ଦେଖାଯିବ ଯେ, ସାମାଜିକ ମଙ୍ଗଳ ପ୍ରତ୍ୟକ୍ଷ ବା ପରୋକ୍ଷରେ ଶେଷପର୍ଯ୍ୟନ୍ତ ମନୁଷ୍ୟର ଶରୀର ଓ ପ୍ରାଣର ରକ୍ଷା ଓ ପୁଷ୍ଟି ମାତ୍ର । ଶରୀର ଓ ପ୍ରାଣ ପ୍ରତି ଯେଉଁ ମାୟା, ଆମର ମୀମାଂସକମାନଙ୍କ ଭାଷାରେ ତାହା ରାଗପ୍ରାପ୍ତ—ଅର୍ଥାତ୍ ତାହା ସ୍ୱଭାବତଃ ଅଛି, କୌଣସି ଯୁକ୍ତି ବା ଉପଦେଶର ତାହା ଫଳ ନୁହେଁ । ପଶୁପକ୍ଷୀ ଓ ମନୁଷ୍ୟଙ୍କ ଭିତରେ ତାହା ସମାନ । ଏଇ ମାୟାର ପ୍ରେରଣାରେ ମନୁଷ୍ୟର ମନର ଯାହାସବୁ ସୃଷ୍ଟି, ତାହାର ଚରମ ମୂଲ୍ୟ ସ୍ୱୀକାର କରିବାରେ ଆମର କୌଣସି ଦ୍ୱିଧା ନାହିଁ । କାରଣ, ସେଇ ସୃଷ୍ଟିରେ ହିଁ ମନୁଷ୍ୟର ସଭ୍ୟ ଜୀବନଯାପନ ସମ୍ଭବ ହୋଇଛି । ମନର ଅନ୍ୟ କୌଣସି ସୃଷ୍ଟିର ଯଦି କିଛି ମୂଲ୍ୟ ଥାଏ, ଏ ସୃଷ୍ଟିର ଭିତ୍ତି ଛଡ଼ା ତାହା ଅସମ୍ଭବ । ମୈତ୍ରେୟୀଙ୍କ ପେନି ବନକୁ ଯିବା ସମ୍ଭବ; କିନ୍ତୁ କାତ୍ୟାୟନୀଙ୍କୁ ଛାଡ଼ି ଘର କରିବା ଅସମ୍ଭବ । କିନ୍ତୁ ମନୁଷ୍ୟର ମନ ଯେ କେବଳ ମନରେ ତୃପ୍ତି ଓ ଆନନ୍ଦ ପାଇଁ ସୃଷ୍ଟି କରେ—ଏହା ବି ସ୍ୱାଭାବିକ କଥା, କାରଣ ଏପ୍ରକାର ସୃଷ୍ଟି ମନୁଷ୍ୟ କରିଛି ଓ କରୁଛି । ତେବେ ସ୍ୱୀକାର କରିବାକୁ ହେବ, ସଭ୍ୟ ସମାଜର ମଙ୍ଗଳବିଧାନ ପାଇଁ ମନୁଷ୍ୟ ଅନେକ ସ୍ୱାଭାବିକ ପ୍ରବୃତ୍ତିକୁ ଦମନ କରିଛି ବା ସେଗୁଡ଼ିକୁ ପରିତ୍ୟାଗ କରିଛି, ସେଇ ମଙ୍ଗଳବିଧାନ ନିମନ୍ତେ ଏଇ ଆତ୍ମତୁଷ୍ଟି ସାହିତ୍ୟିକ ପ୍ରବୃତ୍ତିକୁ ପରିତ୍ୟାଗ କରି ଶରୀର ଓ ପ୍ରାଣର ହିତସାଧନ ପାଇଁ ତାହାର ନିୟୋଗ ହେବା ବିଧେୟ ।

ଏଇ ମତକୁ ଭ୍ରାନ୍ତ, ଜଡ଼ବାଦ କମ୍ବା ଦେହସର୍ବସ୍ୱବାଦ ନାମଦେଇ ହେୟଜ୍ଞାନ କରବାରେ ଲାଭ ନାହିଁ । କନ୍ତୁ ପ୍ରାଣ ମୃତ ସ୍ୱାଭାବକ ମାୟାରେ ତାର ମଙ୍ଗଳ ପାଇଁ ଉପାୟର ନଃସଂଶୟ ମୂଲ୍ୟବୋଧ ଛଡ଼ା ଏହି ମତର ଅନ୍ୟ କୌଣସି ଭିତ୍ତି ନାହିଁ । ସାମାଜକ ମଙ୍ଗଳ କାହିଁକ କାମ୍ୟ ସେ ପ୍ରଶ୍ନ ଏଠି ଏହା ଉଠାଏ ନାହିଁ, ମାନନଏ । ଅର୍ଥାତ୍ ଉପାୟ ନେଇ ତର୍କ ଚଳେ, ଉଦ୍ଦେଶ୍ୟ ନେଇ ନୁହେଁ । କୌଣସିଟି ଅନ୍ୟ କଛିର ସଦୁପାୟ କ ନୁହେଁ, ଏହା ତର୍କର କଥା, କାରଣ, ପ୍ରମାଣର ବଷୟ । କନ୍ତୁ କୌଣସି ଜନଷ ତା ନଜ ପାଇଁ କାମ୍ୟ କ ନୁହେଁ ଏହା ପ୍ରମାଣ ସାପେକ୍ଷ ନୁହେଁ, ରୁଚର କଥା । ଅନ୍ୟ ଉଦ୍ଦେଶ୍ୟ—ନରପେକ୍ଷ ସାହତ୍ୟକ ଆନନ୍ଦ କାମ୍ୟ କ ନୁହେଁ, ତାହା ଯା'ର ମନ କାମ୍ୟ ବୋଲ ଜାଣିଛି, ତା' ପାଖରେ କାମ୍ୟ—ଯମେବୈଷ ବୃଣୁତେ ତେନ ଲଭ୍ୟଃ । ସେଇ ବୋଧ ଯାହାର ମନରେ ନାଇଁ, ତାର ପାଖରେ ପ୍ରମାଣ କରାଯାଇପାରବନ । ସାହତ୍ୟକ ଆନନ୍ଦ ଯେ ସେଇ ଆନନ୍ଦରେ ଶେଷ ହୋଇ ହିଁ ଅମୂଲ୍ୟ, ଆଲଙ୍କାରକ-ମାନଙ୍କ ଭାଷାରେ, ମନର ଅନୁଭୂତ ବ୍ୟତୀତ ତାର ଅନ୍ୟପ୍ରମାଣ ସମ୍ଭବ ନୁହେଁ—ସଚେତସାମନୁଭବଃ ପ୍ରମାଣଂ ତତ୍ର କେବଲମ୍ ।

ଏପ୍ରକାର ଆଲୋଚନାରେ ତର୍କର ମୁଖ ବନ୍ଦ ହୋଇପାରେ । କନ୍ତୁ ମନର ସଂଶୟ ଘୁଞ୍ଚେ ନାହିଁ । ତାର କାରଣ, ସାହତ୍ୟକ ସୃଷ୍ଟି ଓ ସାମାଜକ ଜୀବନ ଭିତରେ ଯେ ଭେଦ ସବୁ ସମୟରେ ମନେରଖିବା କଠିନ । ଲୌକକ ଓ ସାମାଜକ ଜୀବନ ହିଁ ସାହତ୍ୟ ସୃଷ୍ଟିର ଉପକରଣ । ସୁତରାଂ ସାହତ୍ୟକ ସୃଷ୍ଟି ଚଳଣିରେ ଲୌକକମନ ବ ସାମାଜକ ଜୀବନର ପାଖାପାଖି ଥାଏ । ଆଉ ସେ ସୃଷ୍ଟିର ପ୍ରଭାବ ମଝିମଝିରେ ମନ ଓ ଜୀବନ ଉପରେ ପଡ଼ିବ, ଏହା ସ୍ୱାଭାବକ । ଭାରତବର୍ଷରେ ହନ୍ଦୁର ସାମାଜକ ମାନସରେ ରାମାୟଣର କାହାଣୀ ଓ ଚରତ୍ରର ପ୍ରଭାବ ଅସ୍ୱୀକାର କରାଯାଇ ନପାରେ । ଏ ଯୁଗର ଶିକ୍ଷିତ ବଙ୍ଗ ନରନାରୀଙ୍କ ମନ ଓ ସମାଜ ଉପରେ ରବୀନ୍ଦ୍ରନାଥଙ୍କ କାବ୍ୟର ପ୍ରଭାବ ସ୍ୱୀକୃତ । ସାହତ୍ୟକମାନେ ବ ତ ସାମାଜକ ମଣିଷ । ସମାଜର ସୁଖଦୁଃଖ ଆଶାନରାଶା ଉପକରଣ ରୂପେ ସେମାନଙ୍କ ସାହତ୍ୟକ ମନକୁ ହିଁ ଉଦ୍‌ବୁଦ୍ଧ କରେ ତା ନୁହେଁ, ସେମାନଙ୍କର ସାମାଜକ ମନକୁ ମଧ୍ୟ ଆନ୍ଦୋଳତ କରେ ଏବଂ ଏଇ

ସାମାଜିକ ମନର ପ୍ରଭାବ ସାହିତ୍ୟରେ ତାର ପ୍ରତିଫଳନ ଘଟେ । ଯାହାର ମନରେ ସାହିତ୍ୟବୋଧ ପ୍ରଖର ନୁହେଁ, ଏବଂ ଯାହାର ମନର ସାମାଜିକତା ଅତ୍ୟନ୍ତ ପ୍ରଖର, ସେମାନେ ସାହିତ୍ୟର ଏଇପରି ଗୌଣ ଫଳକୁ ତାର ମୂଳ ଲକ୍ଷ୍ୟ ବୋଲି ବିଚାର କରନ୍ତି, ଯେ ସାହିତ୍ୟରୁ ଏଇ ସାମାଜିକ ଫଳଲାଭର ସମ୍ଭାବନା ନାହିଁ । ଅବସର ବିନୋଦନର ସାହିତ୍ୟ ନାମ-କରଣରୁ ମନେହୁଏ ଜିନିଷଟି ହାଲକା । ଅବସର କାହିଁକି ଖରାପ ଓ ତାର ବିନୋଦନ କାହିଁକି ଦୋଷାବହ, କାର୍ଯ୍ୟଗ୍ରାହୀ ଲୋକର ଏ ପ୍ରଶ୍ନ ମନକୁ ଆସେନି । ମାର୍କସ୍‌ପନ୍ଥୀମାନେ କହିବେ ହୁଏତ ନୀଚ ଶ୍ରେଣୀ ଯେଉଁପରିକି ଅସୂୟା ନକରେ ଉଚ୍ଚ ଶ୍ରେଣୀ ପାଇଁ ବେକାର ଘଟୁଥାଏ, ତାରି ଅନୁ-କୂଳରୁ ଏ ମନୋଭାବର ସୃଷ୍ଟି ହୁଏ ।

ସମାଜ ଓ ସାହିତ୍ୟର ଏଇ ଯୋଗାଯୋଗ ସାହିତ୍ୟ ବିଚାରରେ ଅନେକ ବିପତ୍ତି ମାନ ସୃଷ୍ଟି କରେ । ଆଧୁନିକ କାଳରେ ସାହିତ୍ୟ ସମାଲୋଚନାରେ ଗୋଟିଏ କଥା ପ୍ରବର୍ତ୍ତିତ ହୋଇଛି—Escapism, ଯାହାର ଅନୁବାଦ ହୋଇଛି ପଲାୟନୀ ବୃତ୍ତି । ବର୍ତ୍ତମାନ ସମାଜର ଦୁଃଖ ଦୈନ୍ୟ ଓ ଅସଙ୍ଗତିରେ ପୀଡ଼ିତ ହୋଇ ଓ ତା'ର ପ୍ରତିକାରରେ ହତାଶ ହୋଇ ଅନେକ କବି ଓ ସାହିତ୍ୟିକ ଏପରି ସାହିତ୍ୟ ସୃଷ୍ଟି କରିଛନ୍ତି, ମନୁଷ୍ୟର ସାମାଜିକ ମନ ଓ ଜୀବନ ସଙ୍ଗେ ଯାହାର ସଂପର୍କ ନାହିଁ, ଯାହାର ଉପକରଣ ମଧ୍ୟ ସମ୍ପୂର୍ଣ୍ଣ ସେମାନଙ୍କର କଳ୍ପନାପ୍ରସୂତ । ସାମାଜିକ ଜୀବନର ମାଟିକୁ ସେମାନେ ସ୍ପର୍ଶ କରୁନାହାନ୍ତି । କଳ୍ପନାରେ ହସ୍ତୀଦନ୍ତ ସୌଧରେ ତାଙ୍କର ଆଶ୍ରୟ । ଅର୍ଥାତ୍ ଏ ପ୍ରକାର ପଳାୟନ ଯେ ଭୀରୁତା, 'ଏସ୍କେପିଜ୍‌ମ୍' ନାଁଟିରେ ସେଇ ବିଚାର ଦୃଢ଼ୀଭୂତ । କିନ୍ତୁ ଏ ବିଚାର କବିର ସାମାଜିକ ମନ ଓ କର୍ତ୍ତବ୍ୟ ବୁଦ୍ଧିର ବିଚାର, ନା ତାର କାବ୍ୟର ବିଚାର, ସବୁ ସମୟରେ ବୁଝାପଡ଼େନି । ବର୍ତ୍ତମାନ ଯୁଗରେ ଧର୍ମିକ ସମାଜର ବିଜୟ ଦୁନ୍ଦୁଭି ବଜାଇବା କିମ୍ବା ତା ଗୁଳିବା ଯଦି ସମସ୍ତଙ୍କର କର୍ତ୍ତବ୍ୟରେ ପରିଣତ ହୁଏ, ତେବେ ତାହା ସାମାଜିକ କର୍ତ୍ତବ୍ୟ, ସାହିତ୍ୟିକ ନୁହେଁ । ଯଦିଓ ଯେଉଁ ବିଜ୍ଞାନୀ 'ରିଏଲଟିଭିଟି' କିମ୍ବା 'କ୍ୱାଣ୍ଟମ୍' ତତ୍ତ୍ୱ ନେଇ ବ୍ୟସ୍ତ ଲାଗିଛି ସେ କାହିଁକି ଦ୍ୱିଗୁଣିତ ଶସ୍ୟ ଉତ୍ପାଦନ ପାଇଁ ଚେଷ୍ଟା କରୁନାହିଁ, ଏପରି ଦୋଷାରୋପ କରାଯାଏନା । କାରଣ ପ୍ରତିଭାର

ସୃଷ୍ଟି ଯାହା ମନୁଷ୍ୟର ସଭ୍ୟତାକୁ ଗଢ଼ିତୋଳେ, ଅନେକ ସମୟରେ ତାହା ତାତ୍କାଳିକ ହୋଇନଥାଏ । 'ଏସ୍‌କେପିଜିମ୍' ଯଦି ସାହିତ୍ୟିକ ଦୋଷ ହୁଏ, ତେବେ ତାର କାରଣ ମଧ୍ୟ ସାହିତ୍ୟିକ, ସାମାଜିକ ନୁହେଁ । ଲୌକିକ ମନ ଓ ଜୀବନରୁ ଯେଉଁ ସାହିତ୍ୟ ବିଚ୍ଛିନ୍ନ, ତାର ଧାରା କ୍ଷୀଣ ହୁଏ । ସାହିତ୍ୟର ଭାଗୀରଥୀ ମନୁଷ୍ୟର ଲୌକିକ ସୁଖଦୁଃଖ ଭୂମି ଛାଡ଼ି ପ୍ରବାହିତ ହୋଇନପାରେ । ଏଥିପାଇଁ ପୃଥିବୀର ଯାହା ବଡ଼ ସାହିତ୍ୟ, ମନୁଷ୍ୟର ଲୌକିକ ମନ ଓ ଜୀବନ ତାର ଉପକରଣ । ଆଉ ଯେଉଁ ସୃଷ୍ଟି ଖୁବ୍ ବଡ଼, ଏଇ ମନ ଓ ଜୀବନର ବହୁ ଜନ ଓ ବହୁ ମୂର୍ତ୍ତି ତାହାର ବିଚିତ୍ର ଉପକରଣ—ଯେପରି ମହାଭାରତରେ, ଗ୍ରୀକ୍ ଟ୍ରାଜେଡ଼ିରେ, ସେକ୍‌ସ୍‌ପିଅରଙ୍କ ନାଟକରେ, ଟଲ୍‌ଷ୍ଟୟଙ୍କ ଉପନ୍ୟାସରେ । ଶ୍ରେଷ୍ଠ ସାହିତ୍ୟରେ ସାମାଜିକ ଜୀବନର ଏଇ ବିଚିତ୍ର ଉପକରଣସମ୍ଭାର ବିଭ୍ରମ ଜନ୍ମାଏ ଯେ ସାହିତ୍ୟର ଲକ୍ଷ୍ୟ ସମାଜ ଓ ଜୀବନରେ ପ୍ରଭାବ ବିସ୍ତାର । ସାମାଜିକ ଜୀବନ ସାହିତ୍ୟର ଉପକରଣ—ସାମାଜିକ ପ୍ରେରଣାରେ ନୁହେଁ, ସାହିତ୍ୟିକ ପ୍ରୟୋଜନରେ । ଯେଉଁ କବିର କାବ୍ୟ ଏସ୍‌କେପିଷ୍ଟ, ବର୍ତ୍ତମାନ ସମାଜ ବ୍ୟବସ୍ଥାରେ କବିଙ୍କର ବିତୃଷ୍ଣା ଓ ହତାଶା ତାହାର ମୂଳ କାରଣ ନୁହେଁ । ତାର କାରଣ, ଏହାର ବିପୁଳ ଓ ଜଟିଳ ଉପକରଣରେ ସାହିତ୍ୟ ସୃଷ୍ଟି ପ୍ରତିଭାର ଅଭାବ କିମ୍ବା ଅନ୍ୟପ୍ରକାର ସୃଷ୍ଟି ଆଡ଼କୁ ପ୍ରତିଭାର ଆଗ୍ରହ । ଯେଉଁଥିପାଇଁ ଶକ୍ତି ପାଏନି, ତାହା ପାଇଁ ଚେଷ୍ଟା ନକରିବା ଭୀରୁତା ନୁହେଁ, ସୁବୁଦ୍ଧି—ଦୁଇକ୍ଷେତ୍ରରେ ଜୀବନରେ ଓ ସାହିତ୍ୟରେ । 'ଏସ୍କେପିଷ୍ଟ' କାବ୍ୟ ଯଦି 'ଆଇଭରି ଟାଓ୍ୱାର'ର ଉପରକୁ ଯାଇ ବି କାବ୍ୟ ହୁଏ, ତାହାର ଧାରା ଶୀର୍ଣ୍ଣ ହେଲେ ବି ତାହା ସାର୍ଥକ ହୁଏ । ବଡ଼ ଚେଷ୍ଟାର ବ୍ୟର୍ଥତା ଯେ ଶ୍ରେଷ୍ଠ ସାଫଲ୍ୟଠାରୁ ବଡ଼, ସାହିତ୍ୟରେ ଅନ୍ତତଃ ସେ କଥା କୁହାଯାଇପାରେନି । ସାହିତ୍ୟର ରୂପ ତ ଏକ ନୁହେଁ, ତାହା ବହୁରୂପୀ । ଲକ୍ଷ୍ମୀ କାହିଁକି ଦଶଭୁଜା ହେଲେନି, ଏ ଅବଶୋଷ ବୃଥା ।

ଆଧୁନିକ ସମାଜ ଓ ଜୀବନରେ ଯେଉଁ ଅସଙ୍ଗତି ଓ କୁଶ୍ରୀତା ତାହାର ରିକ୍ତତାକୁ ଦେଶବିଦେଶରେ ଅନେକ ଆଧୁନିକ କବିଗଣ ନିଜ କାବ୍ୟର ଉପଜୀବ୍ୟ କରିଛନ୍ତି । ଏ ଅସଙ୍ଗତି ଓ କୁଶ୍ରୀତା ଯେତେବେଳେ ସୃଷ୍ଟିର ଅଂଶ,

ସେତେବେଳେ ଏହାକୁ କାବ୍ୟରେ ରୂପଦେଇ ପାରିଲେ ସେ କାବ୍ୟ ଯେ ସାର୍ଥକ କାବ୍ୟ ହୋଇପାରିବ, ଏଥିରେ ସନ୍ଦେହ ନାହିଁ । କି ଯେଉଁସବୁ ସମାଲୋଚକମାନେ ସାହିତ୍ୟର ଶ୍ରେଣୀବିଭାଗ ଓ ନାମକରଣ ବ୍ୟବସାୟ କରନ୍ତି, ସେମାନଙ୍କୁ କହିବାକୁ ପଡ଼ିବ ଯେ ଏ କାବ୍ୟ ମଧ୍ୟ ଏସ୍କେପିଷ୍ଟ କାବ୍ୟ । ଏହା ଚରମ ରିଅଲିଜମ୍ ନୁହେଁ, ବରଂ ସେଣ୍ଟିମେଣ୍ଟାଲ । ଜୀବନରେ ଓ ସୃଷ୍ଟିରେ ସବୁକିଛି କୁତ୍ସୀ ନୁହେଁ, ଏଥିରେ ସୌନ୍ଦର୍ଯ୍ୟ ବି ଅଛି । ଏ କାବ୍ୟ ସେଠାରୁ ପଳାୟନ । ଦୋଷ କିଛି ନୁହେଁ, କୌଣସି ବିଶେଷ ମୁଡ୍‌ର କାବ୍ୟରଚନାରେ ଏପ୍ରକାର ପଳାୟନ ପାଇଁ କବି ବାଧ୍ୟ ହୁଅନ୍ତି । କିନ୍ତୁ ଏପ୍ରକାର କାବ୍ୟରେ ଜୀବନ ଅଛି ଓ ସୃଷ୍ଟି ଯଥେଚ୍ଛା । କାହିଁକି ହେଲା ସେଥିପାଇଁ ଅଭିଯୋଗ ଅଛି । ଶରୀରର ସୁଷମା ହିଁ ଯେ କଙ୍କାଳକୁ ଧରି ରଖିଛି, ନରନାରୀଙ୍କ ପ୍ରେମମୂଳରେ ଯେଉଁ କାମ ଥାଏ, ତାହାର ପୀଡ଼ା ଏ କାବ୍ୟର ଧ୍ୱନି । କୁତ୍ସୀ ଓ ସୁନ୍ଦର, ବୀଭତ୍ସ ଓ ମଧୁର, ନିଷ୍ଠୁର ଓ ମୈତ୍ରୀ—ସୃଷ୍ଟିର ଏଇ ସବୁ ବିଷାମୃତର ବିସ୍ମୟ ଏପ୍ରକାର କାବ୍ୟରେ ନଥାଏ । ସମଗ୍ର ସୃଷ୍ଟି କାହିଁକି ପ୍ରେମିକର ସ୍ୱପ୍ନ ହେଉଛି, ଏ କାବ୍ୟରେ ସେଇ ଅଭିଯୋଗ ।

ଦିନଥିଲା, ଯେତେବେଳେ ମନୁଷ୍ୟ ମନେକରୁଥିଲା ଏଇ ପୃଥିବୀ ସୃଷ୍ଟିର ମଧ୍ୟମଣି । ସୂର୍ଯ୍ୟ, ଚନ୍ଦ୍ର, ତାରା ତାକୁ ଘେରି ରହିଛନ୍ତି । ବିଶ୍ୱର ସକଳ ପ୍ରକାର ଗତିବିଧି ହେଉଛି ପୃଥିବୀର ରଜା ମଣିଷର ମଙ୍ଗଳ ଅମଙ୍ଗଳର ମନ୍ତ୍ରଣା । ବିଶ୍ୱସୃଷ୍ଟି ମନୁଷ୍ୟର ଇଚ୍ଛା ପ୍ରକାରେ କାହିଁକି ନୁହେଁ—ସେଦିନ ହୁଏତ ଏ ଅଭିମାନର ଅର୍ଥ ଥିଲା, ଆଜି ମନୁଷ୍ୟ ଜାଣି-ସାରିଛି ତାର ଏଇ ପୃଥିବୀ ବ୍ରହ୍ମାଣ୍ଡର ମହାଶୂନ୍ୟରେ ସମୁଦ୍ର ବାଲୁକା-ତୀରର ଏକ ରେଣୁ ସଦୃଶ, ତା'ଠାରୁ ହଜାର ହଜାର ଗୁଣ ବଡ଼ ଶତଲକ୍ଷ ପୃଥିବୀର ଗୋଟିଏ କୋଣରେ ତାହା ରହିଛି । ତାହା ସେଠାରୁ ଦୂରଭୂତ ହୋଇପାରେ ବ୍ରହ୍ମାଣ୍ଡର ଶୂନ୍ୟତା ଯେ କିଛି ବଢ଼ିଲା, ତାହା ଜଣା ହିଁ ଯିବନି । ଏଇ ପୃଥିବୀକୁ ମନୁଷ୍ୟ ମାତ୍ର ଅଳ୍ପ ଦିନ ହେଲା ଆସିଛି । ଚିର-ଦିନ ବି ରହିବନି । ଯେଉଁଦିନ ତାପହୀନ ଓ ବାୟୁଶୂନ୍ୟ ହୋଇ ନିଜ ଗତିପଥରେ ପୃଥିବୀ ଘୂରିବ, ତାହାର ବହୁପୂର୍ବରୁ ମନୁଷ୍ୟ ଏଠାରୁ ଲୋପ ପାଇଯିବ । ସୃଷ୍ଟି କାହିଁକି ମନୁଷ୍ୟର ଇଚ୍ଛାନୁଯାୟୀ ହୋଇନି—ଏ

ଅଭିଯୋଗ ଆଜି ନିଦାରୁଣ ପରିହାସ । ସୃଷ୍ଟି ଯାହା ହୋଇଛି ତାହା କାହିଁକି ଏପରି ହୋଇଛି, ଏ ପ୍ରଶ୍ନର କୌଣସି ଅର୍ଥ ନାହିଁ । ଏହି ସୃଷ୍ଟିର ସକଳକୁ ପଦାର୍ଥ ଯେ ନିଷ୍ଠୁର ଓ ବୀଭତ୍ସ ନୁହେଁ, ତାହା ଆମର ସୌଭାଗ୍ୟ । କଙ୍କାଳକୁ ଘେରି ଯେଉଁ ଶରୀରର ସୁଷମା ଥାଏ, କାମର ପଙ୍କରେ ଯେ ପ୍ରେମର ପଦ୍ମ ଫୁଟେ—କାବ୍ୟରେ ନହେଲେ ବି ଜୀବନରେ ତାହା କୃତଜ୍ଞ ଚିତ୍ତରେ ସ୍ମରଣ ରଖିବାକୁ ହେବ ।

